ଆମ ରାଷ୍ଟ୍ରପତି

# ଶ୍ରୀମତୀ ଦ୍ରୌପଦୀ ମୁର୍ମୁ



ଡକ୍ଟର କୃତ୍ତିବାସ ନାୟକ

# ଶ୍ରୀମତୀ ଦ୍ରୌପଦୀ ମୁର୍ମୁ

# ଆମ ରାଷ୍ଟ୍ରପତି

ଲେଖକ : ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ:

**ଗଜପତି**

ବାଇମୁଣ୍ଡି ମାର୍ଗ,ଡଗରପଡ଼ା,

କଟକ - ୭୫୩୦୦୨

ପ୍ରଥମ ପ୍ରକାଶ : ୨୦୨୨

ମୂଲ୍ୟ : ପଚାଶ ଟଙ୍କା

**SMT. DROUPADI MURMU**

**AMA RASTRAPATI**

Author : Dr. Kruttibas Nayak

**Publisher : GAJAPATI**

Baimundi Marg, Dagarapada

Cuttack-753002

1st. Edition: 2022

Price: Rs.50.00

# ଦ୍ରୌପଦୀ ମୁର୍ମୁ : ଆମ ରାଷ୍ଟ୍ରପତି



ଆମ ଦେଶ ଭାରତର ଗଣତନ୍ତ୍ର ଶାସନ ପ୍ରଣାଳୀରେ ସର୍ବୋଚ୍ଚ ସାମ୍ବିଧାନିକ ପଦବୀ ହେଉଛି-ରାଷ୍ଟ୍ରପତି । ରାଷ୍ଟ୍ରପତିଙ୍କ ନାମରେ ହିଁ ଦେଶ ଶାସନ ଚାଲେ । ସେ ହେଉଛନ୍ତି ଦେଶର ପରିଚୟ । ତାଙ୍କ ସ୍ୱାକ୍ଷର ସ୍ୱୀକୃତି ବିନା କୌଣସି ନୂଆ ଆଇନ କାର୍ଯ୍ୟକାରୀ ହୋଇ ପାରେନା । ସେ ଆମର ତିନି ସେନାବାହିନୀର ସୁପ୍ରିମ କମାଣ୍ଡର । ତାଙ୍କ ବିନା ସ୍ୱୀକୃତିରେ କୌଣସି ସୈନ୍ୟବାହିନୀ କୌଣସି ଦେଶ ସହିତ ଯୁଦ୍ଧ କରିପାରିବେ ନାହିଁ । ସେ ବିଭିନ୍ନ ଜାତୀୟ ସ୍ତରର ବିଶ୍ୱବିଦ୍ୟାଳୟଗୁଡ଼ିକର କୁଳାଧିପତି ଭାବରେ କାର୍ଯ୍ୟ କରନ୍ତି । ସେ ଦେଶର ସମ୍ବିଧାନର ରକ୍ଷକ ଓ ଦେଶର ପ୍ରଥମ ନାଗରିକ । ତେଣୁ ତାଙ୍କ ପଦ ରାଷ୍ଟ୍ରପତି ଶବ୍ଦ ପୂର୍ବରୁ ମହାମହିମ ବ୍ୟବହାର କରାଯାଏ ।

ଆମଦେଶରେ ବିଶେଷ କିଛି ଅସୁବିଧା ସୃଷ୍ଟିହେଲେ, କିମ୍ବା ଜରୁରୀ ପରିସ୍ଥିତି ଆସିଲେ, ସେ ଦେଶରେ ଜରୁରୀ ପରିସ୍ଥିତି କାର୍ଯ୍ୟକାରୀ କରିବା ପାଇଁ ଆଦେଶ ଦେଇପାରନ୍ତି । ସେହିଭଳି କୌଣସି ରାଜ୍ୟରେ ଅରାଜକତା ଦେଖାଦେଲେ, କିମ୍ବା ଆଇନକାନୁନରେ ବିଭ୍ରାଟ ହେଲେ, ସେଠାରେ ରାଷ୍ଟ୍ରପତି ଶାସନ ଲାଗୁ କରିଦିଅନ୍ତି । ତାଙ୍କର ପ୍ରତିନିଧି ଭାବରେ ରାଜ୍ୟପାଳ ରାଜ୍ୟର ଶାସନ କ୍ଷମତା ହାତକୁ ନେଇଯାଆନ୍ତି । କେହି ଜଣେ ଅପରାଧୀ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଥିଲେ, ତାକୁ

ସେଥିରୁ ମୁକ୍ତ କରିଦେବାର ବା ସେ ଦଣ୍ଡକୁ କୋହଳ କରିଦେବାର କ୍ଷମତା ରାଷ୍ଟ୍ରପତିଙ୍କର ହିଁ ରହିଛି। ତେଣୁ ତାଙ୍କ କ୍ଷମତାର ପରିସର ସୀମିତ ନୁହେଁ। ସେ ଭିଟୋ ପ୍ରୟୋଗ କରି ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ସରକାରଙ୍କ ଯେକୌଣସି ନୀତିନିୟମକୁ ଅଚଳ କରି ଦେଇପାରନ୍ତି। ବିଦେଶରୁ ଆସୁଥିବା ରାଷ୍ଟ୍ରଦୂତମାନେ ତାଙ୍କ ନିକଟରେ ନିଜର ପରିଚୟ ପତ୍ର ପ୍ରଦାନ କରିଥା'ନ୍ତି। ଅଖଣ୍ଡ କ୍ଷମତାର ଅଧିକାରୀ ହେଲେ ବି ସେ ସରକାରଙ୍କ ପରାମର୍ଶରେ ଦେଶର ଶାସନକୁ ପରିଚାଳନା କରନ୍ତି।

ଆମଦେଶରେ ଗଣତନ୍ତ୍ର ଶାସନ ଚାଲୁଥିବାରୁ ଲୋକସଭା ଓ ରାଜ୍ୟସଭାର ସଭ୍ୟ ତଥା କେନ୍ଦ୍ର ମନ୍ତ୍ରିମଣ୍ଡଳର ସଭ୍ୟମାନଙ୍କୁ ସେ ଶପଥ ପାଠ କରାଇଥା'ନ୍ତି। ବିଭିନ୍ନ ରାଜ୍ୟର ରାଜ୍ୟପାଳ, ନିର୍ବାଚନ କମିଶନର, ସୁପ୍ରିମକୋର୍ଟର ବିଚାରପତିମାନଙ୍କୁ ନିଯୁକ୍ତି ଦେଇ ସେ ଶପଥ ପାଠ କରାଇଥା'ନ୍ତି। ନିର୍ଦ୍ଧାରିତ ସମୟ ବ୍ୟବଧାନରେ ଏବଂ ବିଦେଶରୁ ଫେରିବା ପରେ ପ୍ରଧାନମନ୍ତ୍ରୀ ରାଷ୍ଟ୍ରପତି ଭବନକୁ ଯାଇ ତାଙ୍କ ସହିତ ଦେଶର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରନ୍ତି। ବିରୋଧୀ ଦଳର ନେତା ଓ ସଭ୍ୟମାନେ ତଥା ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ମଧ୍ୟ ତାଙ୍କର ସମସ୍ୟାକୁ ନେଇ ରାଷ୍ଟ୍ରପତିଙ୍କ ନିକଟରେ ଗୁହାରି କରିପାରନ୍ତି। ଲୋକସଭାର ବାଚସ୍ପତି ଓ ରାଜ୍ୟସଭାର ଅଧ୍ୟକ୍ଷ ତଥା ଉପରାଷ୍ଟ୍ରପତି ତାଙ୍କର ପ୍ରତିନିଧି ଭାବରେ ପାର୍ଲିଆମେଣ୍ଟକୁ ପରିଚାଳନା କରନ୍ତି।

ଯେକୌଣସି ଦଳରୁ ନିର୍ବାଚିତ ହୋଇଥିଲେ ବି ରାଷ୍ଟ୍ରପତି ଭାବେ ଶପଥ ଗ୍ରହଣ କରିବା ପରେ ସେ ଦଳମତ ନିର୍ବିଶେଷରେ ଜଣେ ଦେଶର ନେତା ଭାବରେ ଗଣା ହୁଅନ୍ତି। ସାରା ଦେଶର ଜନତା ତାଙ୍କ ପାଇଁ ସମାନ। ସେ ଉଚିତ ମନେକଲେ, ପାର୍ଲିଆମେଣ୍ଟରେ ପାସ ହୋଇଥିବା ବିଲକୁ ସଂଶୋଧନ ପାଇଁ ପରାମର୍ଶ ଦେଇ ଫେରାଇ ଦେଇପାରନ୍ତି।

ଦେଶର ସର୍ବୋଚ୍ଚ ସାମ୍ବିଧାନିକ ପଦରେ ଆସୀନ ହୋଇଥିବା ମହାମହିମ ରାଷ୍ଟ୍ରପତିଙ୍କ ପାଇଁ ଉପଯୁକ୍ତ ସମ୍ମାନ ଉଦ୍ଦେଶ୍ୟରେ ତାଙ୍କୁ ସରକାର ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେଇଥା'ନ୍ତି। ତାଙ୍କ ସଚିବାଳୟ ଓ ବାସଭବନକୁ 'ରାଷ୍ଟ୍ରପତି ଭବନ'କୁହାଯାଏ। ରାଷ୍ଟ୍ରପତି ଭବନ ହେଉଛି-ଦେଶର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ। ଏ' ସମ୍ପର୍କରେ ଆମେ ପରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରିବା।



ମହାମହିମ ରାଷ୍ଟ୍ରପତିଙ୍କ ନିର୍ବାଚନ ହେଉଛି ଆମ ଦେଶରେ ପ୍ରଚଳିତ ରାଜନୀତିର ଏକ ବିଶେଷ ଅଙ୍ଗ। ଏହି ପଦବୀ ପାଇଁ କେବଳ ଯେ ରାଜନୈତିକ ଦଳର ବ୍ୟକ୍ତି ଯୋଗ୍ୟ ବିବେଚିତ ହେବେ, ସେଭଳି କୌଣସି ନିୟମ ନାହିଁ। ତେଣୁ ଅତୀତରେ ସର୍ବପଲ୍ଲୀ ରାଧାକୃଷନ, ଜାକିର ହୁସେନ, ଓ ଏ.ପି.ଜେ. ଅବଦୁଲ କଲାମଙ୍କ ଭଳି ବିଦ୍ୱାନ ଓ ବୈଜ୍ଞାନିକ କୋଣସି ରାଜନୈତିକ ଦଳର ନେତା ନ ହୋଇ ମଧ୍ୟ ଆମଦେଶର ରାଷ୍ଟ୍ରପତି ହୋଇପାରିଥିଲେ। ଓଡ଼ିଶାରେ ଜନ୍ମିତ ବରାହ ଗିରି ଭେଙ୍କଟ ଗିରି ମଧ୍ୟ ସ୍ୱାଧୀନ ପ୍ରାର୍ଥୀ ଭାବେ ମନୋନୟନ ପତ୍ର ଦାଖଲ କରି ନିର୍ବାଚନରେ ଜିତି ରାଷ୍ଟ୍ରପତି ହୋଇପାରିଥିଲେ। ସେ ବ୍ରହ୍ମପୁର ସହରରେ ଜନ୍ମ ଗ୍ରହଣ କରି ଖଲ୍ଲିକୋଟ କଲେଜରେ ଶିକ୍ଷା ଗ୍ରହଣ କରିଥିଲେ। କିନ୍ତୁ ସେ କେବେ ନିଜକୁ ଜଣେ ଓଡ଼ିଆ ଭାବେ ପରିଚୟ ଦେଉ ନଥିଲେ।

ଆମ ଦେଶରେ ଗଣତନ୍ତ୍ର ଶାସନ ପ୍ରଚଳିତ ହେବାପରେ ପ୍ରଥମେ ଡକ୍ଟର ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଭାବେ ନିର୍ବାଚିତ ହୋଇଥିଲେ। ଏହି ନିର୍ବାଚନ ଲୋକସଭା ନିର୍ବାଚନ ଭଳି ନ ହୋଇ ପ୍ରତିନିଧିମୂଳକ ସଭ୍ୟମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ। ସାରା ଦେଶରେ ଥିବା ସାଂସଦ ଓ ବିଭିନ୍ନ ରାଜ୍ୟରେ ଥିବା ବିଧାନସଭାର ସଭ୍ୟମାନେ କେବଳ ଏହି ନିର୍ବାଚନରେ ଭୋଟଦେଇ ରାଷ୍ଟ୍ରପତିଙ୍କୁ ନିର୍ବାଚିତ କରିଥା'ନ୍ତି।

ଆମ ଭାରତ ହେଉଛି ଏକ ବିବିଧତାର ଦେଶ। ଏଥିରେ ବିଭିନ୍ନ ଜାତି, ବିଭିନ୍ନ ଧର୍ମ ଓ ବିଭିନ୍ନ ବର୍ଣ୍ଣର ଲୋକ ବସବାସ କରନ୍ତି। ଆମ ସମ୍ବିଧାନ ସମସ୍ତଙ୍କୁ ସମାନ ମୌଳିକ ଅଧିକାର ପ୍ରଦାନ କରିଥାଏ। ଫଳରେ ପ୍ରତ୍ୟେକ କ୍ଷେତ୍ରରୁ ସମସ୍ତଙ୍କର ପ୍ରତିନିଧିତ୍ୱ ରକ୍ଷା କରିବା ଉଦ୍ଦେଶ୍ୟରେ ଏବଂ ବିଭିନ୍ନ ବର୍ଗ ଓ ଅଞ୍ଚଳରୁ ଯୋଗ୍ୟ ବ୍ୟକ୍ତିମାନଙ୍କୁ ଏଭଳି ଉଚ୍ଚ ପଦବୀରେ ଆସୀନ କରିବାକୁ ସୁଯୋଗ ଦିଆଯାଇଥାଏ। ତେଣୁ ଆଜିଯାଏ ସଂଖ୍ୟାଲଘୁ ସମ୍ପ୍ରଦାୟରୁ ଯଥା-ମୁସଲମାନ ଓ ଶିଖ ସମ୍ପ୍ରଦାୟରୁ ମୋଟ ଚାରିଜଣ ରାଷ୍ଟ୍ରପତି ପଦବୀରେ ଆସୀନ ହୋଇପାରିଛନ୍ତି। (ରାଷ୍ଟ୍ରପତିଙ୍କ ତାଲିକା ନିମ୍ନରେ ଦେଖିହେବ) ସେହିପରି ବିଭିନ୍ନ ରାଜ୍ୟକୁ ପ୍ରତିନିଧିତ୍ୱ କରୁଥିବା ନେତାମାନଙ୍କ ମଧ୍ୟରୁ ପୂର୍ବ, ପଶ୍ଚିମ ଉତ୍ତର ଓ ଦକ୍ଷିଣ ଭାରତରୁ ଅନେକ ଯୋଗ୍ୟ ବ୍ୟକ୍ତି ରାଷ୍ଟ୍ରପତି ହୋଇପାରିଛନ୍ତି। ଦଳିତ ସମ୍ପ୍ରଦାୟରୁ ଦୁଇଜଣ ଓ ମହିଳା

ବର୍ଗରୁ ଦୁଇଜଣ ତଥା ଆଦିବାସୀ ସମ୍ପ୍ରଦାୟରୁ ଆମ ଓଡ଼ିଶାର ଗର୍ବ ଓ ଗୌରବ ଦ୍ରୌପଦୀ ମୁର୍ମୁ ଏହି ପଦବୀରେ ଆସୀନ ହୋଇପାରିଛନ୍ତି। ଏହା ନିଶ୍ଚୟ ଆମ ଦେଶପାଇଁ ଏକ ଐତିହାସିକ ଘଟଣା।

## ଅତୀତର ରାଷ୍ଟ୍ରପତି ନିର୍ବାଚନ

ମେ-୦୨-୧୯୫୨



ଡ଼ଃ ରାଜେନ୍ଦ୍ର ପ୍ରସାଦ (୧୯୫୦-୧୯୫୬)

ମେ-୦୬-୧୯୫୬

ଡ଼ଃ ରାଜେନ୍ଦ୍ର ପ୍ରସାଦ

(୧୯୫୬-୧୯୬୨) ଦ୍ୱିତୀୟ ଥର ପାଇଁ ନିର୍ବାଚିତ

ମେ-୦୭-୧୯୬୨



ଡ଼ଃ ସର୍ବପଲ୍ଲୀ ରାଧାକୃଷ୍ଣନ (୧୯୬୨-୧୯୬୭)

ମେ-୦୬-୧୯୬୭



ଡ଼ଃ ଜାକିର ହୁସେନ (୧୯୬୭-୧୯୬୯)



ଅଗଷ୍ଟ-୧୬-୧୯୬୯



ଭେଙ୍କଟ ଗିରି ବରାହ ଗିରି (୧୯୬୯-୧୯୭୪)

ଅଗଷ୍ଟ-୧୭-୧୯୭୪



ଫକିରୁଦ୍ଦୀନ ଅଲ୍ଲୀ ଅହମ୍ମଦ (୧୯୭୪-୧୯୭୭)

ଅଗଷ୍ଟ-୦୬-୧୯୭୭



ନୀଲମ ସଂଜୀବ ରେଡ୍ଡୀ-(୧୯୭୭-୧୯୮୨)

ଜୁଲାଇ-୧୨-୧୯୮୨



ଜ୍ଞାନୀ ଜୈଲ ସିଂହ-(୧୯୮୨-୧୯୮୭)



ଜୁଲାଇ-୧୩-୧୯୮୭



ଆର ଭେଙ୍କଟରମଣ-(୧୯୮୭-୧୯୯୨)

ଜୁଲାଇ-୧୩-୧୯୯୨



ଶଙ୍କରଦୟାଲ ଶର୍ମା-(୧୯୯୨-୧୯୯୭)

ଜୁଲାଇ-୧୪-୧୯୯୭



କେ. ଆର. ନାରାୟଣନ-(୧୯୯୭-୨୦୦୨)

ଜୁଲାଇ-୧୫-୨୦୦୨



ଏ. ପି. ଜେ. ଅବଦୁଲ କଲାମ-(୨୦୦୨-୨୦୦୭)



ଜୁଲାଇ-୧୯-୨୦୦୭



ଶ୍ରୀମତୀ ପ୍ରତିଭା ସିଂହ ପାଟିଲ-(୨୦୦୭-୨୦୧୨)

ଜୁଲାଇ-୧୯-୨୦୧୨



ପ୍ରଣବ ମୁଖାର୍ଜୀ-(୨୦୧୨-୨୦୧୭)

ଜୁଲାଇ-୧୭-୨୦୧୭



ରାମନାଥ କୋବିନ୍ଦ-(୨୦୧୭-୨୦୨୨)

ଜୁଲାଇ-୧୮-୨୦୨୨



ଶ୍ରୀମତୀ ଦ୍ରୌପଦୀ ମୁର୍ମୁ-(୨୦୨୨- ବର୍ତ୍ତମାନ ପର୍ଯ୍ୟନ୍ତ)



*ବିଶେଷ ଦ୍ରଷ୍ଟବ୍ୟ:* ଡକ୍ଟର ଜାକିର ହୁସେନ ରାଷ୍ଟ୍ରପତି ଥିବା ସମୟରେ ତାଙ୍କର ଅକାଳ ବିୟୋଗ ଘଟିଥିଲା। ଫଳରେ ପ୍ରଥମେ ଉପରାଷ୍ଟ୍ରପତି ଥିବା ଭି. ଭି. ଗିରି ୦୩-ମେ-୧୯୬୯ରୁ ଜୁଲାଇ ୨୦ ପର୍ଯ୍ୟନ୍ତ କାମଚଳା ରାଷ୍ଟ୍ରପତି ଦାୟିତ୍ୱ ବହନ କରିଥିଲେ। ପରେ ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ମହମ୍ମଦ ହିଦାୟତୁଲ୍ଲା ୨୦ ଜୁଲାଇ ୧୯୬୯ ଠାରୁ ଅଗଷ୍ଟ ୨୪ ପର୍ଯ୍ୟନ୍ତ କାମଚଳା ରାଷ୍ଟ୍ରପତି ଦାୟିତ୍ୱରେ ରହିଥିଲେ।

ସେହିପରି ରାଷ୍ଟ୍ରପତି ଫକିରୁଦ୍ଦିନ ଅଲ୍ଲି ଅହମ୍ମଦ କ୍ଷମତା ରେ ଥିବା ଅବସ୍ଥାରେ ୧୧ ଫେବୃୟାରୀ ୧୯୭୭ ଦିନ ମୃତ୍ୟୁ ବରଣ କରିଥିଲେ। ତାଙ୍କ ସ୍ଥାନରେ ଉପ ରାଷ୍ଟ୍ରପତି ବାସପା ଦାନପା ଯତି କାମଚଳା ରାଷ୍ଟ୍ରପତି ହୋଇଥିଲେ।

**ଦ୍ରୌପଦୀ ମୁର୍ମୁଙ୍କ ପିଲାଦିନ :**

ଆମ ରାଜ୍ୟର ଉତ୍ତର ଦିଗରେ ଥିବା ଓଡ଼ିଶାର ବୃହତ୍ତମ ଜିଲ୍ଲା ହେଉଛି ମୟୂରଭଞ୍ଜ ଜିଲ୍ଲା। ଏହି ଜିଲ୍ଲାର ଏକ ସ୍ୱତନ୍ତ୍ର ପରିଚୟ ରହିଛି। ଦେଶ ସ୍ୱାଧୀନ ହେବା ପୂର୍ବରୁ ଏହା ଏକ ଖ୍ୟାତିସମ୍ପନ୍ନ ରାଜ୍ୟ ଥିଲା। ଏହା ବିଭିନ୍ନ ଦିଗରୁ, ଯଥା- ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ଭୌଗୋଳିକ ଦୃଷ୍ଟିକୋଣରୁ ବିଶେଷ ଖ୍ୟାତି ଅର୍ଜନ କରିଥିଲା। ତେଣୁ ଭଞ୍ଜବଂଶୀୟ ରାଜାମାନେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ଥିଲେ। ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ ଗଠନ ଦିଗରେ ଏବଂ ଓଡ଼ିଶା ରାଜ୍ୟ ବିକାଶ ଦିଗରେ ଅନେକ ମହତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି। ପାହାଡ଼ ପର୍ବତ, ଖଣିଜ ସମ୍ପଦ ତଥା ସବୁଜ ଜଙ୍ଗଲରେ ପରିପୂର୍ଣ୍ଣ ରାଜ୍ୟ ମୟୂରଭଞ୍ଜ ଅଞ୍ଚଳ ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ଅନ୍ୟତମ ଥିଲା। ଏହି ରାଜ୍ୟରେ ଶାସନ ବ୍ୟବସ୍ଥା ଅତ୍ୟନ୍ତ ଶୃଙ୍ଖଳିତ ଥିଲା। ବିଭିନ୍ନ ଆଦିବାସୀ ସଂପ୍ରଦାୟର ଲୋକେ ଏହି ଅଞ୍ଚଳରେ ବସବାସ କରନ୍ତି।

ମୟୂରଭଞ୍ଜ ଜିଲ୍ଲାର ରାଇରଙ୍ଗପୁର ହେଉଛି-ଏକ ଅବହେଳିତ ତଥା ଆଦିବାସୀବହୁଳ ଅଞ୍ଚଳ। ବିଶେଷକରି ସାନ୍ତାଳ ଜାତିର ଆଦିବାସୀ ଏହି ଅଞ୍ଚଳରେ ବସବାସ କରନ୍ତି। ଏହା ସେ ଜିଲ୍ଲାର ଗୋଟିଏ ସବଡ଼ିଭିଜନ। ରାଇରଙ୍ଗପୁର ସହରଠାରୁ ଅଳ୍ପଦୂରରେ କୁସୁମୀ ବ୍ଲକ ଅଧୀନସ୍ଥ ଉପରବେଡ଼ା ଗ୍ରାମର ଦୁଇ ନମ୍ବର



ୱାର୍ଡ଼ରେ ଗୋଟିଏ କୃଷକ ପରିବାରରେ ବିରଞ୍ଚି ନାରାୟଣ ଟୁଡୁ ନାମକ ଜଣେ ବ୍ୟକ୍ତି ଥିଲେ। ସେ ଜଣେ ଗାଁ' ମୁଖିଆ ବା ସର୍ଦ୍ଦାର ଭାବରେ ପରିଚିତ ଥିଲେ। ପରେ ସେ ଗ୍ରାମ ପଞ୍ଚାୟତର ସରପଞ୍ଚ ହୋଇଥିଲେ। ପୂର୍ବରୁ ତାଙ୍କର ପିତା ମଧ୍ୟ ଜଣେ ଜଣାଶୁଣା ଗାଁ' ମୁଖିଆ ଭାବରେ ଗ୍ରାମ ପଞ୍ଚାୟତର ସରପଞ୍ଚ ହୋଇଥିଲେ। ସେତେବେଳେ ସରପଞ୍ଚମାନଙ୍କର ବିଶେଷ କିଛି ରୋଜଗାର ନ ଥିଲା। ସେମାନେ ଅତ୍ୟନ୍ତ ଦାରିଦ୍ର୍ୟ ଭିତରେ ବଣ ଜଙ୍ଗଲ ଘେରା ଅଞ୍ଚଳରେ ଥିବା ଝରଣାର ପାଣି ପିଇ, କ୍ଷେତରୁ ଫସଲ ଅମଳ କରି ବଞ୍ଚୁଥିଲେ। ପାହାଡ଼ତଳିଆ ସେ ଗାଁ'କୁ ଗମନାଗମନର ବିଶେଷ କିଛି ସୁବିଧା ନଥିଲା। ସେ ଅଞ୍ଚଳରେ ସମସ୍ତେ ଗରିବ ଥିବାରୁ କେହି କାହା ସହିତ ତୁଳନା କରିବାର ପ୍ରଶ୍ନ ଉଠୁ ନଥିଲା। ପ୍ରକୃତିର ଦାନ ହିଁ ଥିଲା, ତାଙ୍କ ପାଇଁ ସୁଖ ଓ ସମ୍ପଦ।

ବିରଞ୍ଚି ନାରାୟଣ ଟୁଡୁଙ୍କର ଦୁଇଟି ପୁଅ ଥିଲେ। ତାଙ୍କରି କୋଳରେ ଦ୍ରୌପଦୀ ମୁର୍ମୁ ୧୯୫୮ ମସିହା ଜୁନ ମାସ ୨୦ ତାରିଖରେ ଜନ୍ମଗ୍ରହଣ କରିଥିଲେ। ତାଙ୍କର ବଂଶ ପରମ୍ପରା ଅନୁସାରେ ଜେଜେମାଆଙ୍କ ନାମ ତାଙ୍କୁ ଦିଆଯାଇଥିଲା। ସେମାନଙ୍କର ବିଶ୍ୱାସ ଥିଲା, ନାତି ନାତୁଣୀମାନଙ୍କର ନାମକୁ ଜେଜେବାପା ଓ ଜେଜେମାଙ୍କ ନାମ ଦେଲେ, ସେମାନେ ଦୀର୍ଘଜୀବୀ ହୁଅନ୍ତି। ସେମାନଙ୍କର ନାମ ଲୁଚିଯାଏ ନାହିଁ। ତେଣୁ ସେ ପିଲାଦିନେ ପୁଟି ଟୁଡୁ ଭାବରେ ସମସ୍ତଙ୍କ ନିକଟରେ ପରିଚିତ ହେଉଥିଲେ। ସେହି ନାମ ଧରି ବାପା-ମାଆ ଓ ବନ୍ଧୁ ପରିଜନ ତାଙ୍କୁ ଡାକୁଥିଲେ।



ପାଠପଢ଼ା ବୟସ ହେବାରୁ ଉପରବେଡ଼ା ଗାଁ' ସ୍କୁଲରେ ତାଙ୍କ ନାମ ଲେଖାଇବାକୁ ନିଆଗଲା । ସ୍କୁଲର ଶିକ୍ଷକଙ୍କୁ ପୁଟୁ ନାମଟି ପସନ୍ଦ ହେଲା ନାହିଁ । ସେତେବେଳେ ବାଲେଶ୍ୱର, କଟକ ଜିଲ୍ଲାର ଶିକ୍ଷକମାନେ ହିଁ ବିଭିନ୍ନ ସ୍କୁଲରେ ଶିକ୍ଷକତା କରୁଥିଲେ । ଉପସ୍ଥିତ ଥିବା ଶିକ୍ଷକ ତାଙ୍କର ନାମ ରଖିଦେଲେ-ଦ୍ରୌପଦୀ । ଆଦିବାସୀମାନେ ସେହି ଶବ୍ଦଟିକୁ ଠିକ ଭାବରେ ଉଚ୍ଚାରଣ କରିପାରୁ ନ ଥିବାରୁ, ସେମାନେ ଯିଏ ଯେଭଳି ଉଚ୍ଚାରଣ କରୁଥିଲେ, ସେହି ଅନୁସାରେ ଦ୍ରୌପଦୀ ଶବ୍ଦଟିକୁ ଲେଖୁଥିଲେ । ଦୀର୍ଘଦିନ ପର୍ଯ୍ୟନ୍ତ ତାଙ୍କର ନାମ ଦ୍ରୋପଦୀ ଶବ୍ଦଟିକୁ ଠିକ ଭାବରେ କେହି ଲେଖିପାରୁ ନ ଥିଲେ । ତେଣୁ ବିଭିନ୍ନ ସମୟରେ ତାଙ୍କର ନାମ ଦ୍ରୁପଦୀ, ଦୌପଦି, ଦୁଇପଦୀ ଓ ଦୋର୍ପଦି ଭଳି ବନାନଗତ ତ୍ରୁଟି ରହିଯାଉଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ତାହା ଠିକ ଭାବରେ ଲେଖା ଯାଇଥିଲା ।

ସେ ସମୟରେ ଝିଅମାନଙ୍କୁ ପାଠପଢ଼ା ପ୍ରତି ଉତ୍ସାହିତ କରାଯାଉ ନ ଥିଲା । ବରଂ ଘର କାମରେ ନିପୁଣା କରି ଝିଅମାନଙ୍କୁ ଯଥା ଶୀଘ୍ର ସମ୍ଭବ ବାହା କରିଦେବାକୁ ସମସ୍ତେ ପସନ୍ଦ କରୁଥିଲେ । ଶିଶୁ ଦ୍ରୌପଦୀଙ୍କ କ୍ଷେତ୍ରରେ ମଧ୍ୟ ତାହା ହିଁ ଘଟିଥିଲା । ଘରେ ଜେଜେମା' ଓ ମାଆଙ୍କ ପରାମର୍ଶରେ ସେ ଅନ୍ୟ ଝିଅଙ୍କ ଭଳି ଧାନକୁଟା, ଗୁହାଳ ସଫା କରିବା, ରୋଷେଇ କାମ ଶିଖିବା, ଝରଣାରୁ ପାଣି ବୋହି ଆଣିବା, ଲୁଗାପଟାକୁ ନେଇ ଝରଣା ପାଣିରେ ଧୋଇବା ଏବଂ ନିଜେ କରିବା କାର୍ଯ୍ୟକୁ ସେ ନିୟମିତ କରୁଥିଲେ । ଏଣେ ପାଠ ପ୍ରତି ଅନ୍ୟ କାହାର ଆଦର ନ ଥିବା ସତ୍ତ୍ୱେ , ଦ୍ରୌପଦୀ ଜିଦକରି ନିୟମିତ ସ୍କୁଲକୁ ଯାଉଥିଲେ । ପ୍ରଥମେ ସରକାରଙ୍କ ତରଫରୁ କେତେଖଣ୍ଡ ବହି ମାଗଣାରେ ମିଳିଥିଲା ସତ, କିନ୍ତୁ ଉପର ଶ୍ରେଣୀକୁ ଯିବାରୁ ତାଙ୍କୁ ଆଉ ବହି ମିଳିଲା ନାହିଁ । ତାଙ୍କର ଆର୍ଥିକ ଅବସ୍ଥା ଦିନକୁ ଦିନ ଖରାପ ହେଇ ଯାଉଥିବାରୁ ତାଙ୍କ ବାପା ନୂଆବହି କିଣିଦେବାକୁ ସମର୍ଥ ନ ଥିଲେ । ତେଣୁ ସେ ଗତବର୍ଷ ଯେଉଁପିଲା ସେହି ଶ୍ରେଣୀରେ ପଢୁଥିଲେ, ତାଙ୍କଠାରୁ ପୁରୁଣା ବହି ମାଗିଆଣି ପଢୁଥିଲେ । ସେଗୁଡ଼ିକ ଚିରା ଫଟା ଥିବାରୁ ସେଥିରେ ଅଠା ଲଗାଇବା ଦରକାର ହେଉଥିଲା । କିନ୍ତୁ ଅଠା ତ ତାଙ୍କ ପାଇଁ ସାତ ସପନ ଥିଲା । ତେଣୁ ସେ ନରମ ଭାତକୁ ଚକଟି ସେଥିରେ ଲଗାଇ ଚିରା ଫଟା ବହିର ଯତ୍ନ ନେଉଥିଲେ ।



ସେତେବେଳେ ଗାଁ' ଗହଳିକୁ ବିଜୁଳି ଆଲୁଅ ଯାଇ ନ ଥିଲା। କିରାସିନି ବତି, ଲଣ୍ଠନ ହିଁ ସଞ୍ଜବେଳେ ଘରକୁ ଆଲୋକିତ କରୁଥିଲା। କିନ୍ତୁ ଯେଉଁମାନେ ଅତି ଗରିବ, ସେମାନେ କିରାସିନି ଟିକେ କିଣିପାରୁ ନ ଥିଲେ। ତେଣୁ ଦ୍ରୌପଦୀଙ୍କ ଘରେ ବେଶି ସମୟ ବତି ଜଳିପାରୁ ନ ଥିଲା। ଏପରିକି ତାଙ୍କର ଜେଜେମା' ଯିଏ କି ପାଠର ମୂଲ୍ୟ କିଛି ବୁଝି ନ ଥିଲେ ସେ ନାତୁଣୀ ଦ୍ରୌପଦୀକୁ କହୁଥିଲେ- "ଆଲୋ ! ଦିନଯାକ ଯାଇ ସ୍କୁଲରେ କ'ଣ କରୁଛୁ କି ? ସେଇଠି ଦିନବେଳା ସବୁ ପାଠ ପଢ଼ିଦେଇ ଆସୁନୁ। ଘରେ ଥିବା ଟିକେ କିରାସିନିକୁ ସାରିଦେବାକୁ ସଞ୍ଜବେଳେ ପଢ଼ି ବସିଛୁ।"

ଏତିକି କହି ସେ ବତିକୁ ଲିଭାଇ ଦେଉଥିଲେ। ଏହା କେବଳ ଶିଶୁ ଦ୍ରୌପଦୀଙ୍କ କ୍ଷେତ୍ରରେ ଘଟି ନ ଥିଲା। ସେ ସମୟରେ ଅଭାବ ଓ ସରକାରଙ୍କ ଉଦାସୀନତା କାରଣରୁ ଓଡ଼ିଶାର ପ୍ରାୟ ସବୁ ଗାଁ' ଗହଳିରେ ଏହି ଅବସ୍ଥା ଓ ବ୍ୟବସ୍ଥା ଥିଲା। ମନଥାଇ ମଧ୍ୟ ପାଠ ପଢ଼ିବା ଥିଲା-ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର। ଶିଶୁ ଦ୍ରୌପଦୀ ଥିଲେ-ଜଣେ ପ୍ରତିଭାବାନ ଛାତ୍ରୀ। ପିଲାବେଳୁ ସେ ଶ୍ରେଣୀର ନେତୃତ୍ୱ ନେବାକୁ ଆଗ୍ରହୀ ଥିଲେ। ପାଠପଢ଼ାରେ ସେ ସବୁବେଳେ ଶ୍ରେଣୀରେ ତ ପ୍ରଥମ ହେଉଥିଲେ। ତାଙ୍କ ଶ୍ରେଣୀରେ ମୋଟ ୪୮ ଜଣ ଛାତ୍ର-ଛାତ୍ରୀ ଥିଲେ। ତାଙ୍କ ଭିତରୁ ମାତ୍ର ଆଠଜଣ ଛାତ୍ରୀ ଥିଲେ। ଦ୍ରୌପଦୀ ଶ୍ରେଣୀରେ ମନିଟର ହେବାକୁ ଦାବି କଲେ। କିନ୍ତୁ ସଂଖ୍ୟାଗରିଷ୍ଠ ଛାତ୍ରମାନେ ଜଣେ ପୁଅ ପିଲାକୁ ମନିଟର କରିବାକୁ ଜିଦଧରି ବସିଥିଲେ। କିନ୍ତୁ ନାରୀ ଶକ୍ତିକୁ ଆଗକୁ ନିଆଯାଉ ବୋଲି ଦ୍ରୌପଦୀଙ୍କ ଯୁକ୍ତିକୁ ଶିକ୍ଷକ ଗ୍ରହଣ କରି ନେଇଥିଲେ। ଫଳରେ ଦ୍ରୌପଦୀ ହିଁ ମନିଟର ହୋଇ ଶ୍ରେଣୀ ଭିତରେ ଶୃଙ୍ଖଳା ରକ୍ଷା କରିବାରେ ସମର୍ଥ ହୋଇଥିଲେ। ବିଦ୍ୟାଳୟ ପରିସରକୁ ସଫା-ସୁତର ରଖାଇବାରେ ସେ ବେଶ ଯତ୍ନବାନ ଥିଲେ। ଏଥିରୁ ଜଣା ପଡୁଥିଲା- ଦ୍ରୌପଦୀ ଭବିଷ୍ୟତରେ ଦିନେ ସମାଜର ନେତୃତ୍ୱ ନେବାରେ ସମର୍ଥ ହେବେ।

ପିଲାବେଳୁ ଦ୍ରୌପଦୀ ଖେଳ କୁଦରେ ବେଶ ଆଗୁଆ ଥିଲେ। ପ୍ରାୟ ସବୁ ଖେଳରେ ସେ ପ୍ରଥମ ହେଇଯାଉଥିଲେ। ତେଣୁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀମାନେ ନିଜକୁ



ଅସହାୟ ମନେ କରୁଥିଲେ । ତାଙ୍କ ବିଦ୍ୟାଳୟର ସମ୍ପାଦକଙ୍କର ଝିଅ ସବୁବେଳେ ଦ୍ୱିତୀୟ ସ୍ଥାନରେ ରହି ମନଦୁଃଖ କରୁଥିଲା । ତା' ମନର କଥାକୁ ବୁଝି ଉଦାର ହୃଦୟର ଝିଅ ଦ୍ରୌପଦୀ ଥରେ ତାକୁ ଦୌଡ଼ ପ୍ରତିଯୋଗିତାରେ ପ୍ରଥମ କରାଇବା ଉଦ୍ଦେଶ୍ୟରେ ବାଟ ଛାଡ଼ି ଦେଇଥିଲେ । ସବୁଥର ଦ୍ୱିତୀୟ ହେଉଥିବା ସମ୍ପାଦକଙ୍କ ଝିଅ ଏଥର ପ୍ରଥମ ହୋଇ ଅତ୍ୟନ୍ତ ଖୁସି ହୋଇଯିବା ଦେଖି ଦ୍ରୌପଦୀଙ୍କ ମନ ଆନନ୍ଦରେ ପୂରି ଉଠିଥିଲା । ଅନ୍ୟର ଖୁସିରେ ସେ ଅଧିକ ଖୁସି ହେଉଥିଲେ । ଅନ୍ୟମାନେ ବି ମୋ, ଭଳି ନିଷ୍ଠାରଖି ଭଲ ପାଠ ପଢ଼ନ୍ତୁ, ପ୍ରଥମ ହୁଅନ୍ତୁ । ଏକଥାକୁ ଦ୍ରୌପଦୀ ପିଲାଟି ବେଳୁ ଚାହୁଁଥିଲେ । ବହୁ ଅସୁବିଧାର ସମ୍ମୁଖୀନହୋଇ ସେ ଉପରବେଡ଼ା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ସପ୍ତମ ଶ୍ରେଣୀ ବା ମାଇନର ଶିକ୍ଷା ସମାପ୍ତ କରିଦେଲେ ।

**ଭୁବନେଶ୍ୱରରେ ହାଇସ୍କୁଲ ଶିକ୍ଷା:**

ଦ୍ରୌପଦୀ ମୁର୍ମୁ ମାଇନର ପାସ କରିବା ପରେ ହାଇସ୍କୁଲରେ ପାଠ ପଢ଼ିବାକୁ ଜିଦ ଧରି ବସିଲେ । କିନ୍ତୁ ସେ ଅଞ୍ଚଳରେ ହାଇସ୍କୁଲ ନ ଥିବାରୁ ଦୂରକୁ ଯାଇ ପାଠ ପଢ଼ିବା ତାଙ୍କପାଇଁ ସ୍ୱପ୍ନହୋଇ ରହିଯାଇଥିଲା । ଅସହାୟତା ଅନ୍ଧାର ଭିତରୁ ଦିନେ ତାଙ୍କ ବାପା ଜାଣିବାକୁ ପାଇଲେ, ଭୁବନେଶ୍ୱରରେ ଗରିବ ଆଦିବାସୀ ଛାତ୍ରୀମାନଙ୍କ ପାଇଁ ଗୋଟାଏ ହଷ୍ଟେଲ ରହିଛି । ସେଇଠି ମାଗଣାରେ ରହିବା, ଖାଇବା ସହିତ ତାଙ୍କୁ ପଢ଼ିବାପାଇଁ ଷ୍ଟାଇପେଣ୍ଡ ବାବଦକୁ କିଛି ଟଙ୍କା ମଧ୍ୟ ମିଳେ । ଏକଥା ଜାଣିବା ପରେ ଦ୍ରୌପଦୀଙ୍କ ବାପା ଭୁବନେଶ୍ୱରକୁ ଆସି ବୁଝିବାକୁ ଚେଷ୍ଟାକଲେ । ଶୁଣିଲେ,ଏଥିପାଇଁ ଜାତିଗତ ପ୍ରମାଣ ପତ୍ର ବାରିପଦାରୁ ଆଣିବାକୁ ହେବ । ଝିଅର ସ୍ଥାନୀୟ ଅଭିଭାବକ ବି ଜଣେ ରହିବା ଦରକାର । ତା' ସହିତ ଅନେକ ପ୍ରକାର ଜଟିଳ କଥା ଶୁଣି ସେ ହତାଶ ହୋଇ ଘରକୁ ଫେରିଗଲେ । ପ୍ରକୃତରେ ତାଙ୍କର ଶିକ୍ଷା-ଦୀକ୍ଷା କମ ଥିବାରୁ ଏବଂ ଗ୍ରାମାଞ୍ଚଳରୁ ଆସି ଥିବାରୁ ସେଠାରେ ସେ ଝିଅର ରହିବା ଓ ପାଠପଢ଼ାର ବ୍ୟବସ୍ଥା କରାଇ ପାରିଲେ ନାହିଁ ।



ସେତେବେଳେ ରାଇରଙ୍ଗପୁର ବିଧାନସଭା ମଣ୍ଡଳୀର ବିଧାୟକ ଥିଲେ- କାର୍ତ୍ତିକ ମାଝୀ । ତାଙ୍କ ସହାୟତାରେ ସକଳ ପ୍ରକାର ବ୍ୟବସ୍ଥା କରାଯାଇ ଦ୍ରୌପଦୀଙ୍କର ନାମ ଲେଖାଗଲା-ଭୁବନେଶ୍ୱର-ୟୁନିଟ-୨ ବାଳିକା ହାଇସ୍କୁଲରେ । ସେ ହଷ୍ଟେଲରେ ରହି ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣ କଲେ । ତାଙ୍କର ବ୍ୟବହାର ଅତ୍ୟନ୍ତ ମାର୍ଜିତ, ନମ୍ର ଥିବାରୁ ତାଙ୍କୁ ହଷ୍ଟେଲର ଛାତ୍ରୀମାନେ ସହଜରେ ବିଶ୍ୱାସ କରୁଥିଲେ । ତାଙ୍କର ଆଚରଣ ଶୃଙ୍ଖଳିତ ଥିବାରୁ ସେ ସ୍କୁଲର ଶିକ୍ଷକ କର୍ମଚାରୀଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ତେଣୁ ତାଙ୍କୁ ହଷ୍ଟେଲର ପରିଚାଳନା ଦାୟିତ୍ୱ ପ୍ରଦାନ କରାଯାଇଥିଲା । ସେ ପିଲାଟିବେଳୁ ନିରାମିଷାଶୀ ଥିଲେ, ଏପରିକି ଖାଦ୍ୟରେ ପିଆଜ ରସୁଣ ମଧ୍ୟ ଖାଉ ନ ଥିଲେ । ସେ ନିୟମିତ ଶାଢ଼ି ପିନ୍ଧି ସ୍କୁଲକୁ ଯାଉଥିଲେ । ଘରୁ ବାପା ମାସିକ ମାତ୍ର ଦଶଟଙ୍କା ପଠାଇ ପାରୁଥିଲେ । କମ୍‌ଖର୍ଚ୍ଚରେ ଚଳିବା, କଠିନ ପରିଶ୍ରମ କରିବା, ସାଙ୍ଗ-ସାଥିଙ୍କ ସହିତ ମିଳିମିଶି ଚଳିବା, ପରକୁ ନିଜର କରିବା, ଅନ୍ୟକୁ ବିଶ୍ୱାସକରି ଦାୟିତ୍ୱ ଦେବା ଭଳି ଭଲଗୁଣ ଥିବାରୁ ଦ୍ରୌପଦୀ ଅଳ୍ପଦିନ ମଧ୍ୟରେ ଗୁଡ଼ାଏ ନୂଆ ଅନ୍ତରଙ୍ଗ ସାଙ୍ଗ ତିଆରି କରିପାରିଥିଲେ । ସେ ସ୍କୁଲର ଜଣେ ଏନ. ସି. ସି. କ୍ୟାଡେଟହୋଇ ନିଷ୍ଠାର ସହିତ ଶୃଙ୍ଖଳାଜ୍ଞାନ ଓ ନୀତି ନିୟମ ଶିକ୍ଷାକରି ପାରିଥିଲେ ଫଳରେ ତାଙ୍କର ମାନସିକ ଶକ୍ତିର ବୃଦ୍ଧି ହୋଇପାରିଥିଲା । ସେ ପ୍ରକୃତିରେ ଥିଲେଜଣେ ଦୃଢ଼ମନା, ସରଳପ୍ରେମୀ, ପରୋପକାରୀ, ସେବା ଓ ତ୍ୟାଗ ପ୍ରବୃତ୍ତିର ବାଳିକା ।



୧୯୭୪ ମସିହାରେ ସେ ମେଟ୍ରିକ ପରୀକ୍ଷାଦେଇ ଉତ୍ତୀର୍ଣ୍ଣ ହେଲେ। ଉଚ୍ଚ ଶିକ୍ଷା ପାଇବା ପାଇଁ ତାଙ୍କ ମନ ବ୍ୟାକୁଳ ହେଉଥିଲା। ତେଣୁ ସେ ରହୁଥିବା ହଷ୍ଟେଲକୁ ଛାଡ଼ି ନଥିଲେ।

**ରମାଦେବୀ ମହିଳା ମହାବିଦ୍ୟାଳୟରେ ଉଚ୍ଚ ଶିକ୍ଷା ଓ ଚାକିରି :**

ନିଷ୍ଠାବାନ ଉଦଯୋଗୀ ମଣିଷକୁ ଈଶ୍ୱର ସକଳ ସୁବିଧା ସୁଯୋଗ ଯୋଗାଇ ଦେଇଥା'ନ୍ତି। ତାହା ହିଁ ଘଟିଲା-ଯୁବତୀ ଦ୍ରୌପଦୀଙ୍କ କ୍ଷେତ୍ରରେ। ରମାଦେବୀ ମହିଳା ମହାବିଦ୍ୟାଳୟରେ ଉଚ୍ଚ ମାଧମିକ ଶିକ୍ଷା ପାଇଁ ତାଙ୍କୁ ସୁଯୋଗ ମିଳିଗଲା। ପୂର୍ବପରି ସେ ସେହି ଆଦିବାସୀ ହଷ୍ଟେଲରେ ରହିବାର ସୁଯୋଗ ମଧ ପାଇଲେ। ସେ ହେଲେ ତାଙ୍କ ଅଞ୍ଚଳର ପ୍ରଥମ କଲେଜ ପଢୁଆ ଝିଅ।



ରମାଦେବୀ ମହିଳା ମହାବିଦ୍ୟାଳୟରୁ ସେ କଳାରେ ସ୍ନାତକ ପରୀକ୍ଷା ଦେଇ ୧୯୭୮-୭୯ ବର୍ଷରେ ଉତ୍ତୀର୍ଣ୍ଣ ହେଲେ। ପରୀକ୍ଷା ଫଳ ପ୍ରକାଶିତ ହେବା ମାତ୍ରେ ତାଙ୍କୁ କନିଷ୍ଠ ସହାୟକ ପଦବୀ ପାଇଁ ପ୍ରବେଶିକା ପରୀକ୍ଷା ଦେବାର ସୁଯୋଗ ମିଳିଗଲା। ସେଥିରେ ସେ ଉତ୍ତୀର୍ଣ୍ଣହୋଇ ୧୯୭୯ ମସିହାରେ ରାଜ୍ୟ ସଚିବାଳୟରେ ଜଣେ ତୃତୀୟ ଶ୍ରେଣୀ କର୍ମଚାରୀ ଭାବେ କନିଷ୍ଠ ସହାୟକ ପଦବୀରେ ଯୋଗଦାନ କଲେ। ତେଣୁ ତାଙ୍କୁ ହଷ୍ଟେଲ ଛାଡ଼ି ଭଡ଼ାଘରେ ରହିବାକୁ ପଡ଼ିଲା। ପ୍ରଥମ ମାସରେ ସେ ଦରମା ପାଇଥିଲେ-୨୫୫ ଟଙ୍କା। ସେ ଜାଣିଥିଲେ, ତାଙ୍କ ଘରେ ଭାଇମାନେ ଆର୍ଥିକ ଦୁରବସ୍ଥାରେ ଅଛନ୍ତି। ତେଣୁ ସେ ସେମାନଙ୍କୁ ନିଜ ଦରମାରୁ କିଛି କିଛି ସହାୟତା କରୁଥିଲେ।



ଏହା ମଧ୍ୟରେ ତାଙ୍କ ଗ୍ରାମ ପାଖରେ ଜଣେ ବ୍ୟାଙ୍କ ଅଫିସର ଶ୍ୟାମଚରଣ ମୁର୍ମୁଙ୍କ ସହିତ ଦ୍ରୌପଦୀଙ୍କର ବିବାହ ହୋଇଗଲା । ତେଣୁ ସେହିଦିନଠାରୁ ଦ୍ରୌପଦୀ ଟୁଡୁଙ୍କର ନାମ ବଦଳି ଯାଇ ସ୍ୱାମୀଙ୍କ ସଂଜ୍ଞା ଅନୁସାରେ ଦ୍ରୌପଦୀ ମୁର୍ମୁ ହୋଇଗଲା । ଏବେ ତାଙ୍କର ଠିକଣା ବଦଳି ହୋଇଗଲା- ଗ୍ରାମ: ପାହାଡ଼ପୁର, ରାଇରଙ୍ଗପୁରର ଟଲକପୁର ପଞ୍ଚାୟତ ।

ସେତେବେଳେ ଶ୍ୟାମଚରଣ ମୁର୍ମୁ ରାଇରଙ୍ଗପୁରରେ ରହୁଥିଲେ । ଦ୍ରୌପଦୀ ଭୁବନେଶ୍ୱରରେ ଚାକିରି କରୁଥିଲେ । ସେତେବେଳର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଦ୍ରୌପଦୀ ରାଇରଙ୍ଗପୁର ଚାଲିଆସିଲେ । ଆଉ ଚାକିରିରେ ଯୋଗଦାନ କଲେ ନାହିଁ । ୧ ୯ ୯ ୩ ମସିହାରେ ସବୁଦିନ ପାଇଁ ସେ ସରକାରୀ ଚାକିରି ଛାଡ଼ିଦେଲେ । ତାଙ୍କ ସ୍ୱାମୀଙ୍କର ଅଧିକାଂଶ ସମୟରେ ଦେହ ଅସୁସ୍ଥ ରହୁଥିଲା । ପୁଣି ବାହାରେ ଟୁର ଡିଉଟି ରହୁଥିବାରୁ ଦ୍ରୌପଦୀ ମଧ୍ୟ ତାଙ୍କ ସହିତ ଯାଉଥିଲେ । ତାଙ୍କର ସେବା ଯତ୍ନ କରୁଥିଲେ । ସେହି ସମୟରେ ସମାଜ ସେବା ପ୍ରତି ତାଙ୍କର ଆଗ୍ରହ ସୃଷ୍ଟି ହେବାରୁ ସେ ବଳକା ସମୟରେ ଲୋକମାନଙ୍କର ସୁଖ-ଦୁଃଖ, ଅଭାବ-ଅସୁବିଧାକୁ ବୁଝୁଥିଲେ । ତାଙ୍କୁ କିଭଳି ସାହାଯ୍ୟ ସହଯୋଗ କରାଯାଇପାରିବ, ସେ କାମରେ ନିଜେ ସଂଶ୍ଳିଷ୍ଟ ହୋଇଯାଉଥିଲେ । କେଉଁ ଅଞ୍ଚଳରେ କିଭଳି କାମକଲେ, ସ୍ଥାନୀୟ ଲୋକେ ଉପକୃତ ହୋଇପାରିବେ, ସେ ଦିଗରେ ସେ ସର୍ବଦା ଚିନ୍ତା କରୁଥିଲେ । ତାଙ୍କର ଏହିସବୁ ମହତ୍ ଗୁଣକୁ ଦେଖି ସ୍ଥାନୀୟ ଲୋକେ ତାଙ୍କୁ ରାଜନୀତିରେ ପ୍ରବେଶ କରିବାକୁ ପରାମର୍ଶ ଦେଉଥିଲେ । କିନ୍ତୁ ଦ୍ରୌପଦୀଙ୍କର ସେଥିରେ ଆଗ୍ରହ ନ ଥିଲା ।

ଦ୍ରୌପଦୀ ଅନୁଭବ କରିଥିଲେ, ଶିକ୍ଷା ହେଉଛି-ଆତ୍ମ ବିକାଶର ମୂଳାଧାର । ତେଣୁ ନିଜ ଅଞ୍ଚଳର ଶିକ୍ଷାର ଉନ୍ନତି ଓ ପିଲାମାନଙ୍କ ମନରେ ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରିବାକୁ ସେ ଉପାୟ ଖୋଜି ବୁଲୁଥିଲେ । ୧ ୯ ୯ ୪ ମସିହାରେ ରାଇରଙ୍ଗପୁରଠାରେ ଖୋଲିଥିବା ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ସେ ବିନା ଦରମାରେ ଶିକ୍ଷକତା ଆରମ୍ଭ କଲେ । ସେଠାରେ ପ୍ରଚଳିତ ଆଧ୍ୟାତ୍ମିକ ପରିବେଶ ତାଙ୍କୁ ବେଶ ସୁହାଇଲା । ସେ କହୁଥିଲେ- "ବିଭିନ୍ନ ଦିଗରୁ ପଛୁଆ ଓ ଦୁର୍ବଳ ଥିବା ମଣିଷ ମଧ୍ୟ ସ୍ୱପ୍ନ ଦେଖିପାରେ । ସେହି ସ୍ୱପ୍ନକୁ ସାକାର କରିବାପାଇଁ ଆନ୍ତରିକ ଚେଷ୍ଟା କରିବାକୁ ହୁଏ ।"



ଶିକ୍ଷାକେନ୍ଦ୍ରରେ ଥାଇ ସେ ନିଜର ଆଧ୍ୟାତ୍ମିକ ଶକ୍ତିକୁ ବୃଦ୍ଧି କରିବା ସହିତ ପିଲାମାନଙ୍କୁ ଉଚ୍ଚମାନର ସାର୍ଥକ ଶିକ୍ଷା ପ୍ରଦାନରେ ବ୍ରତୀ ଥିଲେ। ତାଙ୍କର ତ୍ୟାଗ ମନୋବୃତ୍ତି ଓ ସେବାମୂଳକ କାର୍ଯ୍ୟକୁ ଦେଖି ସ୍ଥାନୀୟ ରାଜନେତାମାନେ ତାଙ୍କୁ ରାଜନୀତିରେ ପ୍ରବେଶ କରିବାକୁ ବାରମ୍ବାର ଅନୁରୋଧ କରୁଥିଲେ। ସେମାନେ କହୁଥିଲେ-"ଆପଣଙ୍କ ଭଳି ଜଣେ ଆଦର୍ଶ ନାରୀ ନେତୃତ୍ୱ ନେଲେ, ଆମ ଅଞ୍ଚଳର ସର୍ବାଙ୍ଗୀନ ବିକାଶ ହୋଇପାରିବ। ଗରିବ ଆଦିବାସୀମାନଙ୍କର ଦୁଃଖକୁ ଆଉ କେହି ବୁଝିପାରିବେ ନାହିଁ। ଆପଣ ଆମର ନେତ୍ରୀଭାବରେ ସମୂହ ସ୍ୱାର୍ଥ ରକ୍ଷା କରିବା ଉଦ୍ଦେଶ୍ୟରେ ରାଜନୀତିରେ ଅଂଶ ଗ୍ରହଣ କରନ୍ତୁ।"

ସେତେବେଳଯାଏ ଦ୍ରୌପଦୀ ରାଜନୀତି ବିଷୟରେ କିଛି ବି ଜାଣି ନ ଥିଲେ। ସେ ବୁଝିଥିଲେ-ଲୋକଙ୍କ ସେବା କରିବା ହିଁ ରାଜନୀତି। ଅନେକ ଲୋକଙ୍କ ଅନୁରୋଧକୁ ରକ୍ଷାକରି ସେ ୧୯୯୭ ମସିହାରେ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରୁ ବିଦାୟ ନେଇ ରାଇରଙ୍ଗପୁର ବିଜ୍ଞାପିତ ଅଞ୍ଚଳ ପରିଷଦର କାଉନସିଲର ପଦବୀ ପାଇଁ ନିର୍ବାଚନରେ ଅଂଶ ଗ୍ରହଣ କଲେ। ବିପୁଳ ଭୋଟରେ ବିଜୟୀହୋଇ ସେ ରାଇରଙ୍ଗପୁର ବିଜ୍ଞାପିତ ଅଞ୍ଚଳ ପରିଷଦର ଉପାଧ୍ୟକ୍ଷ ପଦବୀରେ ଆସୀନ ହେଲେ। ସେତେବେଳେ ସେ ଉପାଧ୍ୟକ୍ଷ ଥିବାରୁ ଭତ୍ତା ଆକାରରେ ତାଙ୍କୁ ମାସିକ ତିନିଶହ ଟଙ୍କା ଲେଖାଁ ମିଳୁଥିଲା। ଅଭିଜ୍ଞତାବିହୀନ ଦ୍ରୌପଦୀ ସେତେବେଳର ଅଧ୍ୟକ୍ଷ ରାଜକିଶୋର ଦାଶଙ୍କ ସହାୟତାରେ ଜଣେ ପୋଖତ ରାଜନୀତିଜ୍ଞ ହୋଇଗଲେ। ତାଙ୍କର ସଦଗୁଣ ଓ ସେବା ମନୋବୃତ୍ତିକୁ ଦୃଷ୍ଟିରେ ରଖି ଦ୍ରୌପଦୀଙ୍କୁ ସହରର ପରିଷ୍କାର ପରିଚ୍ଛନ୍ନ ରଖିବାର ଦାୟିତ୍ୱ ଦିଆଯାଇଥିଲା।

ଦ୍ରୌପଦୀ ତାହା ହିଁ ଚାହୁଁଥିଲେ। ରୋଗ ବ୍ୟାଧିରୁ ରକ୍ଷା ପାଇବାକୁ ହେଲେ, ସ୍ୱଚ୍ଛତାର ଆବଶ୍ୟକ। ଏ' ସମ୍ପର୍କରେ ଲୋକମାନଙ୍କୁ ଅଧିକରୁ ଅଧିକ ସଚେତନ କରିବାକୁ ପଡ଼ିବ। ଯେଉଁମାନେ ଅଜ୍ଞ, ସେମାନଙ୍କୁ ପରିଷ୍କାର ରହିବାର ଲାଭ ବିଷୟରେ ବୁଝାଇବାକୁ ପଡ଼ିବ। ଆବଶ୍ୟକ ସ୍ଥଳେ ତାଙ୍କଘର ସାମନାକୁ କିଭଳି ପରିଷ୍କାର ରଖିବାକୁ ହେବ, ସେ କାମକୁ ନିଜେକରି ଦେଖାଇ ଦେବାକୁ ପଡ଼ିବ।



ତେଣୁ ଏହାକୁ ଏକ ଜାତୀୟ କାର୍ଯ୍ୟ ମନେକରି ଦ୍ରୌପଦୀ ନିଜେ କର୍ମଚାରୀମାନଙ୍କ ସହିତ ଯାଇ ସଫେଇ କାର୍ଯ୍ୟ କଲେ। ନିଜ କାମକୁ ନିଜେ କରିବା ଆଉ ଯେଉଁ କାର୍ଯ୍ୟ ହାତକୁ ନେବା, ତାକୁ ନିଷ୍ଠାର ସହିତ ସମାପ୍ତ କରିବା ହେଉଛି-ଦ୍ରୌପଦୀଙ୍କର ନିଜସ୍ୱ ଚରିତ୍ର। ତେଣୁ ସେ ନିଷ୍ଠାର ସହିତ ନିଜ ଦାୟିତ୍ୱକୁ ସମ୍ପାଦନ କରିବାରେ ଲାଗି ପଡ଼ିଥିଲେ। ଦିନେ ଦିନେ ନିଜ ଘରକୁ ଫେରିବାରେ ବହୁତ ବିଳମ୍ବ ହୋଇଯାଉଥିଲା। ତେଣୁ ତାଙ୍କ ସ୍ୱାମୀ ତାଙ୍କପାଇଁ ଖଣ୍ଡିଏ କାର କିଣି ଦେଇଥିଲେ। ଫଳରେ ତାଙ୍କର ଯାତାୟାତର ସୁବିଧା ହୋଇଯାଇଥିଲା। ତାଙ୍କ କାର୍ଯ୍ୟ ପ୍ରଣାଳୀ ଓ ନିଷ୍ଠାକୁ ଦେଖି ସ୍ଥାନୀୟ ଲୋକେ ବହୁତ ଖୁସିଥିଲେ। ଏହା ମଧ୍ୟରେ ତାଙ୍କର ଗୋଟିଏ କନ୍ୟା ସନ୍ତାନ ଜନ୍ମଲାଭ କରିଥିଲା। କିନ୍ତୁ ଦୁଃଖର କଥା, ତିନିବର୍ଷ ବୟସରେ ସେ ଆରପାରିକୁ ଚାଲିଗଲା। ଏଥିରେ ବାପା-ମାଆ ଦୁହେଁ ଭାଙ୍ଗି ପଡ଼ିଥିଲେ। କିନ୍ତୁ ବଡ଼ପୁଅ ଲକ୍ଷ୍ମଣର ମୁହଁକୁ ଚାହିଁ ସେମାନେ ଧୈର୍ଯ୍ୟ ଧରି ରହିଥିଲେ। ପରେ ତାଙ୍କର ଆଉ ଗୋଟିଏ ପୁଅ ସିପୁନ ଓ ଗୋଟିଏ ଝିଅ ଇତିଶ୍ରୀ ଜନ୍ମ ନେଇଥିଲେ। ତିନୋଟି ସନ୍ତାନକୁ ଧରି ମୁର୍ମୁ ପରିବାର ବେଶ ସୁଖରେ ଥିଲେ।

**ବିଧାୟକ ଓ ମନ୍ତ୍ରୀ :**

ସମୟ ହେଉଛି ବଡ଼ ବଳବାନ। ଏହି ସମୟ ମଣିଷକୁ ମାଟିରୁ ଉଠାଇ ନେଇ ଆକାଶ ଛୁଆଇଁ ଦିଏ, ପୁଣି ଆକାଶରୁ ଖସାଇ ପାତାଳରେ ପହଞ୍ଚାଇ ଦିଏ। ଧରିଥିବା ମାଟିକୁ ସୁନା କରିଦିଏ ତ ପୁଣି ସୁନାମୁଣ୍ଡାକୁ ମାଟି କରିଦିଏ। ଯେଉଁମାନେ ସମୟକୁ ଜଗି ତାକୁ ଠିକ ଭାବରେ ବିନିଯୋଗ କରନ୍ତି, ସେମାନେ ଦିନେ ଉତ୍କର୍ଷ ଲାଭ କରନ୍ତି, ଦେଶ ଓ ଜାତିର ମଥାକୁ ଉପରକୁ ଉଠାଇ ଦେଇପାରନ୍ତି।

ସଂଘର୍ଷମୟ ଜୀବନର ପୁଣି ଗତିପଥ ବଦଳି ଚାଲେ। ସୁଖ-ସୁବିଧା ସହିତ ସୁନାର ମୁକୁଟ ବି ବଳେ ବଳେ ଆସି ମଥାରେ ଲାଗିଯାଏ। ତାହା ହିଁ ଘଟିଥିଲା-ଦ୍ରୌପଦୀ ମୁର୍ମୁଙ୍କ ଜୀବନରେ। ତାଙ୍କର ନିଷ୍ଠା, ଦେଶପ୍ରେମ ଓ ସେବା-ତ୍ୟାଗର ସୁଫଳ ଆସି ତାଙ୍କ ପାଦକୁ ଚୁମିଲା। ଭାରତୀୟ ଜନତା ଦଳର ନେତୃବୃନ୍ଦ



ତାଙ୍କୁ ରାଇରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ ବିଧାୟକ ପ୍ରାର୍ଥୀଭାବେ ମନୋନୀତ କରିଦେଲେ। ୨୦୦୦ ମସିହାରେ ଅନୁଷ୍ଠିତ ନିର୍ବାଚନରେ ସେ ବିପୁଳ ସମର୍ଥନପାଇ ରାଜ୍ୟ ବିଧାନସଭାର ସଭ୍ୟ ଭାବେ ନିର୍ବାଚିତ ହୋଇଗଲେ। ତାଙ୍କର ବିଜୟକୁ ସମଗ୍ର ଆଦିବାସୀ ସମାଜ ନିଜର ବିଜୟ ବୋଲି ମନେ କରିଥିଲେ। ତେଣୁ ରାଇରଙ୍ଗପୁରରେ ଅଭୂତପୂର୍ବ ବିଜୟ ଉତ୍ସବ ପାଳିତ ହୋଇଥିଲା।

ସେହି ସମୟରେ ବିଜେଡ଼ି ଓ ବିଜେପି ଦଳର ମିଳିତ ସରକାର ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠନ କରାଯାଇଥିଲା। ପୂର୍ବରୁ ଦ୍ରୌପଦୀ ମୁର୍ମୁଙ୍କର କର୍ମ କୁଶଳତା ଓ ନିଷ୍ଠା ଉପରେ ନବୀନ ପଟ୍ଟନାୟକଙ୍କର ଭରସା ଥିଲା। ସେ ତାଙ୍କୁ ଗୁରୁତ୍ୱପୂର୍ଣ୍ଣ ବିଭାଗ ଯଥା: ବାଣିଜ୍ୟ, ପରିବହନ, ମତ୍ସ୍ୟ ଓ ପଶୁ ସମ୍ପଦ ବିଭାଗର ମନ୍ତ୍ରୀ କରିଦେଲେ। ଏହି ବିଭାଗଗୁଡ଼ିକରେ ଥିଲାପ୍ରଚୁର ଅର୍ଥ କାରବାର। ରାଜସ୍ୱ ଆଦାୟର ମୂଳସୂତ୍ର। ଏଥିରେ ଅନ୍ୟାୟ ଓ ଦୁର୍ନୀତି କରିବାରେ ଅନେକ ସୁଯୋଗ ରହିଛି। ଏକଥା ଜାଣି ପ୍ରଥମେ ନୂଆ ମନ୍ତ୍ରୀ ଦ୍ରୌପଦୀ ମୁର୍ମୁ ବିଚଳିତ ହୋଇଯାଇଥିଲେ।



ମୁଖ୍ୟମନ୍ତ୍ରୀ ନବୀନ ପଟନାୟକ ତାଙ୍କ ଉପରେ ଭରସା ରଖି ଏହି ବିଭାଗଗୁଡ଼ିକୁ ଶୃଙ୍ଖଳିତ କରିବାକୁ ପରାମର୍ଶ ଦେଇଥିଲେ। ଆବଶ୍ୟକ ସ୍ଥଳେ ସେ ତାଙ୍କୁ ଉପଯୁକ୍ତ ସହାୟତା କରିବାକୁ ଆଶ୍ୱାସନା ବି ଦେଇଥିଲେ। ରାଇରଙ୍ଗପୁର

ଭଳି ଏକ ଅବିକଶିତ ଅଞ୍ଚଳ ପାଇଁ ଯାହା କିଛି ଦରକାର, ତାହା ଠିକ ସମୟରେ ଯୋଗାଇ ଦେବାର ବ୍ୟବସ୍ଥା ମଧ୍ୟ କରିଥିଲେ। ଫଳରେ ସେ ମୁଖ୍ୟମନ୍ତ୍ରୀଙ୍କର ଜଣେ ବିଶ୍ୱସ୍ତ ସାନ ଭଉଣୀର ଭୂମିକାରେ ରହିଗଲେ। ରାକ୍ଷୀ ପୂର୍ଣ୍ଣିମା ଦିନ ସେ ଭାଇ ନବୀନ ପଟ୍ଟନାୟକଙ୍କ ହାତରେ ରାକ୍ଷୀ ବାନ୍ଧି ଏହି ବନ୍ଧନକୁ ଚିରଦିନ ପାଇଁ ସୁଦୃଢ଼ କରିଦେଇଥିଲେ।

ମୁଖ୍ୟମନ୍ତ୍ରୀଙ୍କର ଆଶୀର୍ବାଦ ଥିବାରୁ ଦ୍ରୌପଦୀ ମୁର୍ମୁ ନିଜ କର୍ତ୍ତବ୍ୟକୁ ନିଷ୍ଠାର ସହିତ ପାଳନ କରିଚାଲିଲେ। ଫଳରେ ସେ ଜଣେ ଲୋକପ୍ରିୟ ମନ୍ତ୍ରୀ ଭାବରେ ସ୍ୱନାମ ଅର୍ଜନ କରି ଆଦିବାସୀ ସମାଜର ଜଣେ ମୁଖ୍ୟନେତ୍ରୀ ଭାବେ ଗଣାହେଲେ। ନିଜର କାର୍ଯ୍ୟ ଦକ୍ଷତାକୁ ସେ ପ୍ରମାଣିତ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଅଞ୍ଚଳ ବୁଲି ସମସ୍ତ କାର୍ଯ୍ୟକୁ ପ୍ରତ୍ୟକ୍ଷ ଭାବେ ତଦାରଖ କରିବା ଆରମ୍ଭ କରିଦେଲେ। ପ୍ରତି ତିନି ମାସରେ ଥରେ ବିଭାଗୀୟ ମୁଖ୍ୟ ଓ ସଚିବମାନଙ୍କୁ ଡାକି ତାଙ୍କ କାର୍ଯ୍ୟର ସମୀକ୍ଷା କରୁଥିଲେ। ଫଳରେ ବାଟମାରଣା ହୋଇଯାଉଥିବା ଅର୍ଥର ବାଟ ଅଟକିଗଲା। ପ୍ରଥମ ବର୍ଷରେ ସେ ନିଜ ବିଭାଗଗୁଡ଼ିକର ସର୍ବାଧିକ ଟିକସ ଆଦାୟ କରି ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ପ୍ରଶଂସିତ ହୋଇପାରିଥିଲେ।

ମନ୍ତ୍ରୀ ହିସାବରେ ସେ ବିଧାନସଭାରେ ବିରୋଧୀ ଦଳର ସଭ୍ୟମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବାପାଇଁ ଯଥେଷ୍ଟ ସାବଧାନତା ସହିତ ପ୍ରସ୍ତୁତହୋଇ ଆସୁଥିଲେ। ଏଥିପାଇଁ ସେ ଅନ୍ୟ କାହାରି ଉପରେ ନିର୍ଭର କରୁ ନ ଥିଲେ। ତେଣୁ ତାଙ୍କୁ କୌଣସି ପ୍ରକାର ଅପ୍ରୀତିକର ପରିସ୍ଥିତର ସମ୍ମୁଖୀନ ହେବାକୁ ପଡୁ ନ ଥିଲା। ଫଳରେ ଜଣେ ସଚ୍ଚୋଟ ମନ୍ତ୍ରୀ ଭାବରେ ତାଙ୍କର ଯଶ-ଖ୍ୟାତି ବୃଦ୍ଧି ପାଇଲା। ଏହି ସମୟରେ ବିଧାନସଭାର ଶ୍ରେଷ୍ଠ ବିଧାୟକ, ଭାବରେ ସେ ସମ୍ମାନିତ ହେଲେ। ଏଥିପାଇଁ ଗୋଟିଏ କମିଟି ଗଠନ କାରାଯାଇଥିଲା। ଏହି କମିଟିରେ ବିରୋଧୀ କଂଗ୍ରେସ ଦଳ ସମେତ କ୍ଷମତାସୀନ ବିଜେଡ଼ି ଓ ବିଜେପି ଦଳର ନେତାମାନେ ବିଚାରକ ଥିଲେ। ସେମାନେ ତାଙ୍କୁ ୨୦୦୭ ମସିହାର ଶ୍ରେଷ୍ଠ ବିଧାୟ, ଭାବେ ମନୋନୀତ କରି ପଣ୍ଡିତ ନୀଳକଣ୍ଠ ପୁରସ୍କାର ପ୍ରଦାନ କରିଥିଲେ।



ମନ୍ତ୍ରୀ ଦ୍ରୌପଦୀ ମୁର୍ମୁ ଜାଣିଥିଲେ-ତାଙ୍କର ଦୁଇ ଭାଇ ଭଗତ ଟୁଡୁ ଓ ତରଣୀସେନ ଟୁଡୁ ଗରିବ ଥିବାରୁ ତାଙ୍କର ଆର୍ଥିକ ଅବସ୍ଥା ବହୁତ ଖରାପ । ତେଣୁ ସେ ତାଙ୍କର ଅଭାବ ଦୂର କରିବାକୁ ମନସ୍ଥ କରି ନିଜ ଦରମାରୁ ଭାଇମାନଙ୍କୁ କିଛି କିଛି ଆର୍ଥିକ ସାହାଯ୍ୟ କରୁଥିଲେ ।

୨୦୦୪ ମସିହାରେ ବିଜେପି ଓ ବିଜେଡ଼ି ମେଣ୍ଟ ଭାଙ୍ଗିଗଲା । ଫଳରେ ନିର୍ବାଚନରେ ସେମାନେ ଅଲଗା ଅଲଗା ହୋଇ ଲଢ଼ିଥିଲେ । ସେହି ନିର୍ବାଚନରେ ଦ୍ରୌପଦୀ ମୁର୍ମୁ ରାଇରଙ୍ଗପୁର ନିର୍ବାଚନ ମଣ୍ଡଳୀରୁ ପୁନର୍ବାର ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । କିନ୍ତୁ ବିଜୁ ଜନତା ଦଳ ସଂଖ୍ୟାଗରିଷ୍ଠତା ହାସଲ କରିଥିବାରୁ ସେମାନେ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ସରକାର ଗଠନ କଲେ । ଦ୍ରୌପଦୀ ମୁର୍ମୁ ବିରୋଧୀ ଦଳର ଜଣେ ସଦସ୍ୟହୋଇ ରହିଗଲେ ।

୨୦୦୬ ମସିହାରେ ରାଜ୍ୟ ଆଦିବାସୀ ମୋର୍ଚ୍ଚାର ଅଧ୍ୟକ୍ଷ ଭାବରେ ସେ ଦାୟିତ୍ୱ ବହନ କଲେ । ମୁଖ୍ୟମନ୍ତ୍ରୀ ତାଙ୍କ କାର୍ଯ୍ୟକଳାପରେ ପ୍ରୀତ ଥିବାରୁ ତାଙ୍କୁ ଆଦିବାସୀମାନଙ୍କ ବିକାଶ ଦିଗରେ ଯାହା ଦରକାର, ସେ ସବୁକୁ ଠିକ ସମୟରେ ଯୋଗାଇ ଦେଉଥିଲେ । ଯେତେବେଳେ ଯାହା ଅସୁବିଧା ବା ସମସ୍ୟା ହେଉଥିଲା, ସେ ସିଧା ମୁଖ୍ୟମନ୍ତ୍ରୀଙ୍କ ସହିତ ଆଲୋଚନା କରି ସେ ସମସ୍ୟାର ସମାଧାନ କରିଦେଉଥିଲେ । ବିଧାନସଭାରେ ସମସ୍ତ ସଭ୍ୟଙ୍କ ସହିତ ତାଙ୍କର ଉଚିତ ବ୍ୟବହାର ଥିଲା । ତେଣୁ ତାଙ୍କର କେହି ଶତ୍ରୁ କିମ୍ବା ବ୍ୟକ୍ତିଗତ ବିରୋଧୀ ନ ଥିଲେ । ସେ କେବେ କୌଣସି ସଭ୍ୟଙ୍କ ପ୍ରତି କଟୁ ମନ୍ତବ୍ୟ ଦେଉ ନ ଥିଲେ । ତାଙ୍କର ନମ୍ର ସ୍ୱଭାବ ଓ ଭଦ୍ର ଆଚରଣ କାରଣରୁ ସେ ବିଧାନସଭାରେ ସମସ୍ତଙ୍କର ପ୍ରିୟପାତ୍ର ହୋଇ ରହିଥିଲେ ।

ଏହି ସମୟରେ ଭାରତୀୟ ଜନତା ଦଳ ତରଫରୁ ତାଙ୍କୁ ଜିଲ୍ଲା ଅଧ୍ୟକ୍ଷ ଭାବେ ନିଯୁକ୍ତି ମିଳିଲା । ନିଜ ଜିଲ୍ଲାରେ ସଙ୍ଗଠନକୁ ସୁଦୃଢ଼ କରିବା ଥିଲା-ତାଙ୍କର ମୌଳିକ ଦାୟିତ୍ୱ । ସେ ନିଜ କର୍ତ୍ତବ୍ୟକୁ ସୁଚାରୁରୂପେ ସମ୍ପାଦନ କରି କେନ୍ଦ୍ରରେ ଥିବା ହାଇକମାଣ୍ଡଙ୍କ ଶୁଭଦୃଷ୍ଟିରେ ରହିଥିଲେ । ଦ୍ରୌପଦୀ ମୁର୍ମୁ ଏହି

ଦାୟିତ୍ୱରେ ୨୦୦୯ ମସିହା ପର୍ଯ୍ୟନ୍ତ ରହିଥିଲେ । ପରବର୍ତ୍ତୀ ନିର୍ବାଚନରେ ସେ ପରାଜୟ ଲାଭକରି ନିଜ ଦଳର ସଙ୍ଗଠନ କାର୍ଯ୍ୟରେ ଲାଗି ରହିଥିଲେ ।

ସେତେବେଳେ ସାନ୍ତାଳୀ ଭାଷାର ସ୍ୱତନ୍ତତାକୁ ପ୍ରଚାର ପ୍ରସାର କରିବା ଏବଂ ତାକୁ ସମ୍ବିଧାନର ଅଷ୍ଟମ ଧାରାରେ ସ୍ଥାନିତ କରିବା ଉଦ୍ଦେଶ୍ୟରେ ସାନ୍ତାଳ ସମାଜର ଭାଷାପ୍ରେମୀମାନେ ଏକଜୁଟ ହୋଇଥିଲେ । ସେମାନେ ବିଭିନ୍ନ ସମୟରେ ଏହି ଦାବୀକୁ ନେଇ କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । କିନ୍ତୁ ସୁଫଳ କିଛି ମିଳୁ ନ ଥିଲା । ଦ୍ରୌପଦୀ ମୁର୍ମୁ ଏହି ସଂଗଠନର ଜଣେ ପ୍ରମୁଖ ସଦସ୍ୟା ଥିଲେ । ତାଙ୍କ ନେତୃତ୍ୱରେ ଏହି ଦାବୀକୁ ଜୋରଦାର କରାଯାଇଥିଲା । ସେ ମନ୍ତ୍ରୀ ଥିବା ସମୟରେ ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲେ । ଓଡ଼ିଶା, ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗରେ ରହୁଥିବା କୋଟି କୋଟି ସାନ୍ତାଳୀ ଲୋକ ବ୍ୟବହାର କରୁଥିବା ସାନ୍ତାଳୀ ଭାଷା ଓ ଅଲଚିକ ଲିପିକୁ ସ୍ୱୀକୃତି ପ୍ରଦାନ ପାଇଁ ସେ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରୁଥିଲେ । ଏହି ଲିପିରେ ସ୍ୱତନ୍ତତା ଓ ବିଶେଷତ୍ୱ ସମ୍ପର୍କରେ ସେ ଜଣାଇଥିଲେ ଯେ-"ଏହି ଲିପି ବ୍ୟବହାର ସମୟରେ କୌଣସି ବନାନ ନ ଥାଏ । ଇଂରାଜୀ ଅକ୍ଷର ଭଳି ଏହାକୁ ଗୋଟିଏ ପରେ ଗୋଟିଏ ଲେଖାଯାଏ । ଏହା ଯେମିତି ସରଳ ସେମିତି ସମୃଦ୍ଧ । ଏହି ଲିପିରେ ଅନେକ ପୁସ୍ତକ ରଚନା କରାଯାଇ ସାରିଛି । ଏହି ଭାଷା ଓ ଲିପି ହେଉଛି-ଆମ ରାଜ୍ୟର ସମ୍ପତ୍ତି । ଏହାକୁ ସଂରକ୍ଷଣ ଓ ପ୍ରଚାର ପ୍ରସାର କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ସୁଯୋଗ ଦେଖି ସେ ଆଞ୍ଚଳିକ ଭାଷାରେ ଲିଖିତ କେତେଖଣ୍ଡ ପୁସ୍ତକକୁ ନେଇ ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀଙ୍କୁ ଦେଖାଇ, ଏହି ଭାଷାର ସ୍ୱତନ୍ତତା ଓ ବିଶେଷତା ସମ୍ପର୍କରେ ବୁଝାଇ ପାରିଥିଲେ ।"

[illegible]

ଦ୍ରୌପଦୀ ମୁର୍ମୁଙ୍କର ଯୁକ୍ତି ଓ ପ୍ରାମାଣିକ ତଥ୍ୟ ପାଇ ମୁଖ୍ୟମନ୍ତ୍ରୀ ସାନ୍ତାଳୀ ଭାଷା ଓ ଆଞ୍ଚଳିକ ଲିପିକୁ ଜାତୀୟ ସ୍ତରରେ ସ୍ୱୀକୃତି ଦେବା ଉଦ୍ଦେଶ୍ୟରେ ପ୍ରକ୍ରିୟା ଆରମ୍ଭ କରିଦେଇଥିଲେ। ପ୍ରଚଳିତ ନୀତିନିୟମ ଅନୁସାରେ ସେହି ପ୍ରସ୍ତାବ କେନ୍ଦ୍ର ସରକାରଙ୍କ ନିକଟକୁ ପ୍ରେରଣ କରାଗଲା। ଫଳରେ ସାନ୍ତାଳୀ ଭାଷା ଓ ଅଲଚିକ ଲିପି ଭାରତର ସମ୍ବିଧାନର ଅଷ୍ଟମ ଧାରାରେ ଯୋଗ ହେଲା। ଏହି ସଫଳତା ପାଇଁ ମୁଖ୍ୟମନ୍ତ୍ରୀ ନବୀନ ପଟନାୟକ ଦ୍ରୌପଦୀ ମୁର୍ମୁଙ୍କୁ ଧନ୍ୟବାଦ ଓ ଅଭିନନ୍ଦନ ଜଣାଇଥିଲେ।

**ସୁଖ ପରେ ଦୁଃଖ :**

ପ୍ରତ୍ୟେକ ମଣିଷ ପାଇଁ ସୁଖର ସମୟ ତ ଆସିଥାଏ। ସମୟର ଚକ ଘୂରିଗଲେ, ପୁଣି ଦୁଃଖ-ବିଭିନ୍ନ ସମସ୍ୟାକୁ ଧରି ଆସି ପହଞ୍ଚେ। ଏହା ହେଉଛି-ପ୍ରକୃତିର ମୌଳିକ ନୀତି। ଜୀବନ ହେଉଛି-ପାଣି ଫୋଟକା ପରି ଅସ୍ଥାୟୀ। କିଏ କେତେବେଳେ କେମିତି ଆରପାରିକୁ ଚାଲିଯିବ, ସେକଥାକୁ କେହି କହିପାରେ ନାହିଁ। ମୃତ୍ୟୁ ହେଉଛି-ଚିରନ୍ତନ ସତ୍ୟ। କିନ୍ତୁ ଦୁଃଖ ଓ ସମସ୍ୟା ଥିବା ସମୟରେ ଧୈର୍ଯ୍ୟ ଓ ସାହସ ଦରକାର। ସବୁଦିନ ପାଇଁ ଦୁଃଖ କିମ୍ବା ସମସ୍ୟା ରହେ ନାହିଁ। ସମୟର ଚକ ପୁଣି ଘୂରିଯାଏ। ସୁଖ, ସୁବିଧା ଓ ସୁଯୋଗ ପୁଣି ଫେରିଆସେ। ସେଥିପାଇଁ ଧୈର୍ଯ୍ୟର ସହ ଅପେକ୍ଷା କରିବାକୁ ହୁଏ।

ସାପ-ଶିଡ଼ିର ଖେଳର ଜୀବନରେ ଦ୍ରୌପଦୀ ମୁର୍ମୁ ବହୁବାର ତଳ ଉପର ହୋଇଛନ୍ତି। କିନ୍ତୁ ସାହସ ଓ ଧୈର୍ଯ୍ୟ ବଳରେ ସେ ସ୍ଥିତପ୍ରଜ୍ଞ ହୋଇ ତାକୁ ସମ୍ମୁଖୀନ ହୋଇଛନ୍ତି। ତାଙ୍କର ସଂଘର୍ଷମୟ ଜୀବନରେ ସବୁଠାରୁ ଅଧିକ ଦୁଃଖ ଦାୟକ ଦୁର୍ଘଟଣା ଘଟିଗଲା ୨୦୦୯ ମସିହାରେ। ତାଙ୍କର ଜ୍ୟେଷ୍ଠ ପୁତ୍ର ଲକ୍ଷ୍ମଣ ମୁର୍ମୁ ଏକ କାର ଦୁର୍ଘଟଣାରେ ମୃତ୍ୟୁ ବରଣ କଲେ। ଏଥିରେ ସ୍ୱାଭାବିକ ଭାବେ ପିତା-ମାତା ଓ ବନ୍ଧୁ ପରିଜନ ଭାଙ୍ଗି ପଡ଼ିଥିଲେ।

ବିପଦ ଆସିଲେ, ସେ ତା'ର ସାଙ୍ଗ-ସାଥୀଙ୍କୁ ଧରି ଆସିଥାଏ। ଜ୍ୟେଷ୍ଠ ପୁତ୍ରର ଶୋକ ଭୁଲି ଆସିବା ବେଳକୁ ୨୦୧୩ ମସିହାରେ ତାଙ୍କର ଦ୍ୱିତୀୟ

ପୁତ୍ର ଶିପୁନ ସାଙ୍ଗମାନଙ୍କ ସହିତ ବାହାରକୁ ବୁଲି ଯାଇଥିଲେ। ସେଠାରେ ସେ କ'ଣ ଖାଇଲେ, ତାଙ୍କର କ'ଣ ହେଲା, କେହି ଜାଣିପାରିଲେ ନାହିଁ। ଶୋଇଥିବା ଅବସ୍ଥାରେ ତାଙ୍କର ମୃତ୍ୟୁ ହୋଇଯାଇଥିଲା।

ଦ୍ରୌପଦୀଙ୍କର ଦ୍ୱିତୀୟ ପୁତ୍ର ଶିପୁନ ସେତେବେଳକୁ ବିବାହ କରିସାରିଥିଲେ। ତାଙ୍କର ଶିଶୁ କନ୍ୟାଟିଏ ମଧ୍ୟ ଥିଲା। କିନ୍ତୁ ଦୁର୍ଭାଗ୍ୟର କଥା ଶିଶୁ କନ୍ୟାଟି ମଧ୍ୟ ଆରପାରିକୁ ଚାଲିଗଲା। ଅସହାୟ ଅବସ୍ଥାରେ ତାଙ୍କର ବୋହୂ ସବୁଦିନ ପାଇଁ ତାଙ୍କ ବାପଘରକୁ ଚାଲିଗଲେ। ଶୋକ ସାଗରରେ ଭାସିଗଲେ, ମୁର୍ମୁ ଦମ୍ପତି। ପିତା ଶ୍ୟାମ ଚରଣ ମୁର୍ମୁ ଦୁଇ ଯୁବା ପୁତ୍ରଙ୍କୁ ହରାଇ ସଂପୂର୍ଣ୍ଣ ଭାବରେ ଭାଙ୍ଗି ପଡ଼ିଲେ। ଦୀର୍ଘଦିନ ପର୍ଯ୍ୟନ୍ତ ସେ ମାନସିକ ଅବସାଦରେ ରହିଲେ। ଲୋକମାନଙ୍କ ସହିତ ମୋଟେ ମିଳାମିଶା କଲେ ନାହିଁ। କୌଣସି ପ୍ରକାର ଆଶ୍ୱାସନା ତାଙ୍କୁ ଶାନ୍ତ କରାଇପାରିଲା ନାହିଁ। ଶେଷରେ ହୃଦ୍‌ଘାତ କାରଣରୁ ୨୦୧୪ ମସିହାରେ ତାଙ୍କର ମୃତ୍ୟୁ ହୋଇଗଲା।

ଭୟଙ୍କର ପରିସ୍ଥିତିକୁ ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ହେଉଥିବା ସମୟରେ ଦ୍ରୌପଦୀ ମୁର୍ମୁଙ୍କର ମାଆ ଓ ଭାଇଙ୍କର ମୃତ୍ୟୁ ସମ୍ବାଦ ଆସି ପହଞ୍ଚିଲା। ସେ ମାଆ ଆଉ ଭାଇଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ। ଛଅବର୍ଷ ମଧ୍ୟରେ ଛଅଜଣ ଆତ୍ମୀୟଙ୍କୁ ହରାଇ ଦ୍ରୌପଦୀ ମୁର୍ମୁ ଧୈର୍ଯ୍ୟହରା ହୋଇଯାଇଥିଲେ। କେବଳ ଏକମାତ୍ର ଝିଅ ଇତିଶ୍ରୀ ମୁହଁକୁ ଚାହିଁ ସେ ତଟସ୍ଥ ହୋଇ ରହିଥିଲେ। ଧୀରେ ଧୀରେ ତାଙ୍କର ମଧ୍ୟ ମାନସିକ ଅବସାଦ ଆସି ଯାଇଥିଲା। ଅଥୟ ମନ, ବ୍ୟାକୁଳିତ ପରିସ୍ଥିତିରୁ ସେ କେମିତି ଉଦ୍ଧାର ପାଇବେ, ସେହିକଥାକୁ ଚିନ୍ତା କରୁଥିବା ସମୟରେ ରକ୍ଷାବନ୍ଧନ ଦିନ ବ୍ରହ୍ମାକୁମାରୀ ନିର୍ମଳା ଆସି ଦ୍ରୌପଦୀ ମୁର୍ମୁଙ୍କ ହାତରେ ରାକ୍ଷୀ ବାନ୍ଧିଦେଲେ। ତାଙ୍କ ସହିତ କିଛି ସମୟ କଥାବାର୍ତ୍ତା ହୋଇ ସେ ବ୍ରହ୍ମାକୁମାରୀ ଅନୁଷ୍ଠାନ ସମ୍ପର୍କରେ ବହୁତ କିଛି ଜାଣିପାରିଲେ। ସେହିଦିନଠାରୁ ସେ ଏହି ଅନୁଷ୍ଠାନ ସହିତ ନିଜକୁ ସାମିଲ କରିଦେଲେ।

ନିଜର ଦୁଃଖ ଓ ମାନସିକ ବିଷାଦରୁ ମୁକ୍ତି ପାଇବାକୁ ଉପାୟ ଖୋଜୁଥିବା ସମୟରେ ସେ ରାଇରଙ୍ଗପୁରର ବ୍ରହ୍ମାକୁମାରୀ ଆଶ୍ରମ ଭଳି ଏକ ଆଧ୍ୟାତ୍ମିକ ପରିବେଶ ପାଇଗଲେ। ସେ ଅନୁଭବ କଲେ, ଏହି ସ୍ଥାନ ହିଁ ତାଙ୍କର ସବୁ ଚିନ୍ତା ଦୂର କରିବାପାଇଁ

ଉପଯୁକ୍ତ ସ୍ଥାନ । ତେଣୁ ସେ ଅଧିକାଂଶ ସମୟ ଏହି ଆଶ୍ରମରେ ରହି ଯୋଗ ଧ୍ୟାନ କରିଚାଲିଲେ । ନିୟମିତଭାବେ ସେ ରାଜଯୋଗ ଅଭ୍ୟାସ ମଧ୍ୟ କରୁଥିଲେ । ଆଶ୍ରମର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ରାଜଯୋଗ ମାଧ୍ୟମରେ ଧୀରେ ଧୀରେ ତାଙ୍କର ମାନସିକ ଅବସାଦ ଦୂରେଇଗଲା । ଯୋଗ ବଳରେ ତାଙ୍କର ମନ ଦୃଢ଼ ହେବାରେ ଲାଗିଲା । ସେ ପୁଣି ଜନସେବାରେ ଲାଗି ନିଜ ଦୁଃଖକୁ ଭୁଲିଯିବାକୁ ସ୍ଥିର କଲେ ।

ସେ ଅନୁଭବ କରିଥିଲେ, ଶିକ୍ଷା ହିଁ ସାଧାରଣ ମଣିଷକୁ ଅସାଧାରଣ କରିଥାଏ । ମୂଲ୍ୟବୋଧଭିତ୍ତିକ ଶିକ୍ଷା ପାଇବାର ଉପଯୁକ୍ତ ପରିବେଶ ଓ ସୁବିଧା ସୁଯୋଗ ଯୋଗାଇ ଦେଲେ, ଯେକୌଣସି ଦୁର୍ବଳ ଶ୍ରେଣୀର ପିଲା ମଧ୍ୟ ନିଜର ପ୍ରତିଭାକୁ ବିକଶିତ କରିପାରିବ । ଏକଥାକୁ ମନ ଭିତରେ ରଖି ସେ ନିଜ ଅଞ୍ଚଳରେ ଏକ ଆଦର୍ଶ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ମନସ୍ଥକଲେ । କୁସୁମୀ ବ୍ଲକ ଅଧୀନସ୍ଥ ନିଜ ଶ୍ୱଶୁର ଗାଆଁ ପାହାଡ଼ପୁରଠାରେ ସେ ନିଜ ସ୍ୱାମୀ ଓ ପୁତ୍ରମାନଙ୍କ ସ୍ମୃତିରେ ଶ୍ୟାମ-ଲକ୍ଷ୍ମଣ-ଶିପୁନ ମେମୋରିଆଲ ସ୍କୁଲ ବା SLS Memorial ନାମକ ଏକ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରିଦେଲେ । ସେଠାରେ ଗରିବ ଆଦିବାସୀ ପିଲାମାନେ ସହଜରେ ଶିକ୍ଷାଲାଭ କରିବାର ସୁଯୋଗ ପାଇଲେ ।

ନିଜ ଅଞ୍ଚଳରେ ଆଧ୍ୟାତ୍ମିକ ପରିବେଶ ତଥା ଯୋଗ ଶିକ୍ଷା ଦେବା ଉଦ୍ଦେଶ୍ୟରେ ସେ ଉପରବେଡ଼ା ଗ୍ରାମରେ ଗୋଟିଏ ବ୍ରହ୍ମାକୁମାରୀ ଆଶ୍ରମ ନିର୍ମାଣ କରିଦେଲେ । ସେଇଠି ନିୟମିତ ରାଜଯୋଗ ଶିକ୍ଷା ଦିଆଚାଲିଛି ।

**ଝାଡ଼ଖଣ୍ଡ ରାଜ୍ୟର ରାଜ୍ୟପାଳ :**

ସମୟର ଚକ ପୁଣି ଥରେ ଘୂରିଗଲା । ଦୁଃଖ ଯନ୍ତ୍ରଣାର କଳା ବାଦଲ ହଟିଯାଇ ସୁଖ-ସୌଭାଗ୍ୟର ସୂର୍ଯ୍ୟ ଦ୍ରୌପଦୀଙ୍କ ଭାଗ୍ୟ ଆକାଶରେ ଉଦୟ ହେଲା । ଭାରତୀୟ ଜନତା ଦଳର ଶୀର୍ଷନେତା ପ୍ରତ୍ୟେକ ସଭ୍ୟଙ୍କର କାର୍ଯ୍ୟକଳାପ, କର୍ତ୍ତବ୍ୟ ନିଷ୍ଠା ଓ ସାମର୍ଥ୍ୟ ପ୍ରତି ନଜର ରଖିଥା'ନ୍ତି । ଦ୍ରୌପଦୀ ମୁର୍ମୁଙ୍କର ଦକ୍ଷତାକୁ ଦୃଷ୍ଟିରେ ରଖି ତାଙ୍କୁ ରାଜ୍ୟପାଳ ଭଳି ଏକ ସାମ୍ବିଧାନିକ ଉଚ୍ଚ ପଦରେ ବସାଇବାକୁ ସେମାନେ ସ୍ଥିର କଲେ । କିନ୍ତୁ ଏ' ଖବର ଦ୍ରୌପଦୀଙ୍କ ପାଖରେ ନ ଥିଲା । ଯେତେବେଳେ



ସରକାରୀ ସ୍ତରରେ ତାଙ୍କର ବ୍ୟକ୍ତିଗତ ଜୀବନ ଓ ଅପରାଧିକ ବିବରଣୀ ସମ୍ପର୍କରେ ଅଧିକରୁ ଅଧିକ ଅନୁସନ୍ଧାନ ଚାଲିଲା। ସେ ଅନୁମାନ କଲେ, କେନ୍ଦ୍ର ସରକାର ମୋ' ପାଇଁ କିଛି ଗୋଟାଏ ବିଶେଷ ଭଲ କାମ କରୁଛନ୍ତି।

ହଠାତ୍ ତାଙ୍କ ପାଖକୁ ଖବର ଆସିଲା ଯେ, ଝାଡ଼ଖଣ୍ଡ ରାଜ୍ୟ ପାଇଁ ତାଙ୍କୁ ରାଜ୍ୟପାଳ ଭାବେ ଭାରତର ରାଷ୍ଟ୍ରପତି ନିଯୁକ୍ତି ପତ୍ରରେ ସ୍ୱାକ୍ଷର କରିଛନ୍ତି। ରାଜ୍ୟପାଳ ଦାୟିତ୍ୱ ବହନ କରିବାକୁ ପ୍ରସ୍ତୁତ ହୁଅନ୍ତୁ। ନିଯୁକ୍ତି ପତ୍ର ପାଇ ସେ ୨୦୧୫ ମେ ମାସ ୧୮ ତାରିଖ ଦିନ ଝାଡ଼ଖଣ୍ଡ ରାଜ୍ୟର ନବମ ରାଜ୍ୟପାଳ ତଥା ପ୍ରଥମ ମହିଳା ରାଜ୍ୟପାଳ ଭାବେ ଶପଥ ପାଠ କଲେ। ସେ ଜଣେ ଆଦିବାସୀ ସଂପ୍ରଦାୟର ମହିଳା ରାଜ୍ୟପାଳ ହେବା ଖବର ପାଇ ଆଦିବାସୀବହୁଳ ରାଜ୍ୟର ଲୋକେ ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିଲେ। ତାଙ୍କର ଶପଥ ଗ୍ରହଣ ଉତ୍ସବରେ ବହୁଳ ସଂଖ୍ୟାରେ ଯୋଗଦେଇ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ। ଝାଡ଼ଖଣ୍ଡ ରାଜ୍ୟ ଆଉ ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାର ସମ୍ପର୍କର ଅତ୍ୟନ୍ତ ନିବିଡ଼। ଦୁହିଁଙ୍କର କଳା-ସଂସ୍କୃତି ଓ ଚାଲିଚଳନ ତଥା ପରିବେଶ ପ୍ରାୟ ସମାନ। କେବଳ ଓଡ଼ିଶାରେ ଓଡ଼ିଆ ଭାଷା ଚାଲୁଥିବା ସ୍ଥଳେ ଝାଡ଼ଖଣ୍ଡରେ ହିନ୍ଦୀ ଭାଷା ଚଳେ। ଦୁଇଟି ଯାକ ରାଜ୍ୟରେ ସାନ୍ତାଳି ସମ୍ପ୍ରଦାୟର ଲୋକ ବହୁଳ ପରିମାଣରେ ବସବାସ କରନ୍ତି। ପଡ଼ୋଶୀ ରାଜ୍ୟ ଝାଡ଼ଖଣ୍ଡର ସୀମାଠାରୁ ଖୁବ କମ ଦୂରରେ ତାଙ୍କର ଘର ହୋଇଥିବାରୁ ସେ ବିଶେଷ କିଛି ଅସୁବିଧାର ସମ୍ମୁଖୀନ ହୋଇ ନ ଥିଲେ। ସେହିବର୍ଷ ମାର୍ଚ୍ଚମାସ ଛଅ ତାରିଖରେ ଉଚ୍ଚଶିକ୍ଷିତା ତଥା ଏକମାତ୍ର କନ୍ୟା ଇତିଶ୍ରୀର ବିବାହ ଗଣେଶ ଚନ୍ଦ୍ର ହେମ୍ବ୍ରମଙ୍କ ସହିତ ହୋଇଥିଲା। ସେ ଏବେ ଜଣେ ବ୍ୟାଙ୍କ ଅଧିକାରୀ ଭାବେ କାର୍ଯ୍ୟ କରୁଛନ୍ତି। ତାଙ୍କର ମଧ୍ୟ ଗୋଟିଏ ଶିଶୁକନ୍ୟା ଜନ୍ମଲାଭ କରିଛି।

ସରଳ ପ୍ରକୃତିର ନୂତନ ରାଜ୍ୟପାଳଙ୍କୁ ପାଇ ଝାଡ଼ଖଣ୍ଡବାସୀ ତଥା ରାଜ୍ୟ ସରକାର ତାଙ୍କୁ ଆନ୍ତରିକ ଭାବେ ଭଲ ପାଇ ବସିଲେ। ଦାୟିତ୍ୱ ଗ୍ରହଣ କରିବା ପରେ ସେ ହେଲେ, ରାଜ୍ୟରେ ଥିବା ସମସ୍ତ ବିଶ୍ୱବିଦ୍ୟାଳୟର କୁଳାଧିପତି। ତେଣୁ ସେ ପ୍ରଥମେ ରାଜ୍ୟର ଶିକ୍ଷା ବିଭାଗର କାର୍ଯ୍ୟ ପ୍ରଣାଳୀର ସମୀକ୍ଷା କରିଥିଲେ।

ସେ ଜାଣିଥିଲେ, ଖଣିଜ ସମ୍ପଦରେ ଭରପୂର ତଥା ଅସଂଖ୍ୟ ପ୍ରାକୃତିକ ପର୍ଯ୍ୟଟନ ସ୍ଥଳ ଥିବା ରାଜ୍ୟ ଝାଡ଼ଖଣ୍ଡ କୌଣସି ଦିଗରୁ ଦୁର୍ବଳ ନୁହେଁ। କିନ୍ତୁ ସଚେତନତା ଅଭାବ ଓ ଶିକ୍ଷାର ଅବହେଳା ପାଇଁ ଝାଡ଼ଖଣ୍ଡ ରାଜ୍ୟ ଗୋଟିଏ ଗରିବ ରାଜ୍ୟ ଭାବରେ ପରିଚିତ ହେଉଛି। ତେଣୁ ସେ ଶିକ୍ଷା ବ୍ୟବସ୍ଥାକୁ ସୁଦୃଢ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟକୁ ପରିଦର୍ଶନ କରି ସେଠାରେ ଥିବା ଅଭାବ ଓ ଅସୁବିଧାକୁ ଦୂର କରିବାପାଇଁ ସରକାରଙ୍କୁ ପରାମର୍ଶ ଦେଲେ। ଫଳରେ ସେ ରାଜ୍ୟର ଶିକ୍ଷାର ବିକାଶ ତ୍ୱରାନ୍ୱିତ ହୋଇପାରିଲା।

ସେ ଝାଡ଼ଖଣ୍ଡରେ ରାଜ୍ୟପାଳ ଥିବା ସମୟରେ ଅର୍ଥାତ ୨୦୧୯ ମସିହାରେ ତାଙ୍କୁ ରମାଦେବୀ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ସମ୍ମାନିତ କରାଯାଇଥିଲା। ଓଡ଼ିଶାର ରାଜ୍ୟପାଳ ତଥା ବିଶ୍ୱବିଦ୍ୟାଳୟର କୁଳାଧିପତି ପ୍ରଫେସର ଗଣେଶୀ ଲାଲ ତାଙ୍କୁ ଏହି ଉତ୍ସବରେ ସମ୍ମାନସୂଚକ ଡି. ଲିଟ. ଉପାଧିରେ ଭୂଷିତ କରିଥିଲେ। ରାଜ୍ୟପାଳ ଦାୟିତ୍ୱରେ ଥିବା ସମୟରେ ସେ ଦୁଇଥର ମାଉଣ୍ଟ ଆବୁ ଯାଇ ସେଠାରେ ରାଜଯୋଗ ଶିକ୍ଷା ଗ୍ରହଣ କରିଥିଲେ। ଅନ୍ୟମାନଙ୍କୁ ମଧ୍ୟ ରାଜଯୋଗ କରିବାକୁ ପ୍ରେରଣା ଯୋଗାଉଥିଲେ। ପ୍ରାୟ ଦଶବର୍ଷ ଧରି ସେ ବ୍ରହ୍ମାକୁମାରୀ ଆଶ୍ରମ ସହିତ ନିବିଡ଼ ସମ୍ପର୍କ ରଖି ଆସୁଛନ୍ତି। ସେ ଆଜୀବନ ନିରାମିଷାଶୀ ଥିବାରୁ ତାଙ୍କ ସମୟରେ ଝାଡ଼ଖଣ୍ଡ ରାଜଭବନକୁ କେବେ ଆମିଷ ଖାଦ୍ୟ ପଶୁ ନ ଥିଲା।



ତାଙ୍କର ଏକ ଟିଭି ସାକ୍ଷାତକାରରେ ସେ କହନ୍ତି-"ମୁଁ ଯେତେବେଳେ ଝାଡ଼ଖଣ୍ଡ ରାଜ୍ୟର ରାଜ୍ୟପାଳ ଦାୟିତ୍ୱ ବହନ କଲି, ସେତେବେଳେ ମୁଁ ରାଜ୍ୟର ବିଶ୍ୱବିଦ୍ୟାଳୟଗୁଡ଼ିକର କୁଳାଧିପତି ମଧ୍ୟ ହୋଇଗଲି। ତେଣୁ ଉଚ୍ଚ ଶିକ୍ଷାରେ ରହିଯାଇଥିବା ସମସ୍ତ ପ୍ରକାର ସମସ୍ୟାକୁ ଦୂର କରିବା ଥିଲା, ମୋର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ। ସେଥିପାଇଁ ମୁଁ ବାରମ୍ବାର ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ସହିତ ଯୋଗାଯୋଗ ରଖିଲି। ଶିକ୍ଷାର ମାନ କିଭଳି ବୃଦ୍ଧି ପାଇବ, ସ୍ୱତନ୍ତ୍ର ମହିଳା କଲେଜ କିଭଳି ଅଧିକରୁ ଅଧିକ ଖୋଲିବ। ରୋଜଗାରକ୍ଷମ ଶିକ୍ଷାପଦ୍ଧତିକୁ କିଭଳି ଆପଣେଇ ନେବାକୁ ହେବ। ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ଏ'ଦିଗରେ ଥିବା ଅସୁବିଧାକୁ ଦୂରକଲି। ସେତେବେଳେ ଝାଡ଼ଖଣ୍ଡ ରାଜ୍ୟରେ ପ୍ଲସ ଟୁ ବା ଉଚ୍ଚମାଧ୍ୟମିକ ବିଦ୍ୟାଳୟ ବ୍ୟବସ୍ଥା ହିଁ ନ ଥିଲା। ଅନ୍ୟ ରାଜ୍ୟରେ ପ୍ରଚଳିତ ନିୟମ ଅନୁସାରେ ସ୍ୱତନ୍ତ୍ର ଉଚ୍ଚ ମାଧ୍ୟମିକ ବିଦ୍ୟାଳୟମାନ ଖୋଲିଲା। ଫଳରେ ଦୀର୍ଘଦିନରୁ ପଡ଼ି ରହିଥିବା କଲେଜ ଅଧ୍ୟାପକମାନଙ୍କର ପଦୋନ୍ନତି ଘଟିଲା। ଛାତ୍ର-ଛାତ୍ରୀମାନଙ୍କର ପରୀକ୍ଷା ନିର୍ଦ୍ଦିଷ୍ଟ ସମୟରେ କିଭଳି ହୋଇପାରିବ ଏବଂ ପରୀକ୍ଷାଫଳ ନିର୍ଦ୍ଦିଷ୍ଟ ସମୟରେ କିଭଳି ପ୍ରକାଶ ପାଇବ, ସେ ଦିଗରେ ମଧ୍ୟ ଗୁରୁତ୍ୱ ଦେଇଥିଲି। ସେ ସବୁ ଅନିୟମିତ ଥିବାରୁ ସମଗ୍ର ଶିକ୍ଷା ବ୍ୟବସ୍ଥାରେ ବିଭ୍ରାଟ ଘଟୁଥିଲା।

ଝାଡ଼ଖଣ୍ଡ ରାଜ୍ୟର ଯୁବ ପ୍ରତିଭାମାନଙ୍କର କ୍ରୀଡ଼ାପ୍ରତି ଅତ୍ୟନ୍ତ ଆଗ୍ରହ ଥିବାରୁ ଅନେକ କ୍ରୀଡ଼ାବିତ ଓ ଯୁବ ଖେଳାଳିଙ୍କୁ ଅଧିକରୁ ଅଧିକ କେମିତି ସୁବିଧା ସୁଯୋଗ ଦିଆଯାଇପାରିବ, ସେ ଦିଗରେ ମୁଁ ଚିନ୍ତିତ ଥିଲି। ନିଜ ତରଫରୁ ସେମାନଙ୍କୁ ଉତ୍ସାହିତ କରିବାପାଇଁ ବିଶ୍ୱବିଦ୍ୟାଳୟ ତରଫରୁ ଚାନସେଲର ଟ୍ରଫି ପ୍ରଚଳନ କରିଥିଲି। ଫଳରେ ଯୁବ ଖେଳାଳିମାନଙ୍କ ମନରେ ଦୃଢ଼ବିଶ୍ୱାସ ଆସିଗଲା।

ଲୋକମାନଙ୍କ ଦୃଷ୍ଟିରେ ଝାଡ଼ଖଣ୍ଡ ଥିଲା, ବଣମୁଲକରେ ଥିବା ଏକ ଅବ୍ୟବସ୍ଥିତ ଅବହେଳିତ ଗରିବ ରାଜ୍ୟ। ଏଠାରେ ସ୍ୱାସ୍ଥ୍ୟ ବ୍ୟବସ୍ଥା ଅତ୍ୟନ୍ତ ନିମ୍ନ ମାନର। ତେଣୁ ରାଜ୍ୟର ବିଭିନ୍ନ କୋଣରୁ ରୋଗୀମାନେ ଭଲସ୍ୱାସ୍ଥ୍ୟ ସେବା

ପାଇବା ଉଦ୍ଦେଶ୍ୟରେ ପଡ଼ୋଶୀ ରାଜ୍ୟ ବିହାର, ପଶ୍ଚିମବଙ୍ଗ ଓ ଓଡ଼ିଶାକୁ ଯାଉଥିଲେ। ତେଣୁ ନିଜ ରାଜ୍ୟର ସ୍ୱାସ୍ଥ୍ୟ ବ୍ୟବସ୍ଥାକୁ ଦୃଢ଼ କରିବାପାଇଁ ରାଜ୍ୟ ସରକାରଙ୍କ ଉପରେ ଚାପ ପକାଇଥିଲି। ଫଳରେ ଏ'ଦିଗରେ ବିଶେଷ ଉନ୍ନତି ସାଧିତ ହୋଇପାରିଥିଲା।

ଏହି ରାଜ୍ୟରେ ସାଢେ ତିନିକୋଟି ଲୋକ ବସବାସ କରନ୍ତି। ସେମାନଙ୍କ ମଧ୍ୟରୁ ପ୍ରାୟ କୋଟିଏରୁ ଅଧିକ ହେଉଛନ୍ତି-ବିଭିନ୍ନ ଆଦିବାସୀ ସଂପ୍ରଦାୟର ଲୋକ। ସେମାନଙ୍କର ବହୁବିଧ ବିକାଶ ନ ଘଟିଲେ, ରାଜ୍ୟର ମାନବ ସମ୍ବଳ ଦୁର୍ବଳ ହୋଇଯିବ। ଅଶିକ୍ଷା, ଅସ୍ୱଚ୍ଛ, ସଚେତନତା ଅଭାବରୁ ଏମାନେ ଅବହେଳିତ ହୋଇ ରହିଯାଇଛନ୍ତି। ଏମାନଙ୍କର ଉନ୍ନତି ମାଧ୍ୟମରେ ହିଁ ରାଜ୍ୟ ଓ ଦେଶର ଉନ୍ନତି ସମ୍ଭବ ହେବ। ତେଣୁ ସେମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ଯାହା ସମ୍ଭବ ମୁଁ କରିଥିଲି। ମୋଟାମୋଟି ଭାବେ କହିବାକୁ ଗଲେ, ରାଜ୍ୟ ସରକାର ମୋ' ସହିତ ଏକମତ ଥିବାରୁ ସେ ସବୁ କାର୍ଯ୍ୟ ସହଜରେ ଓ ଯଥାଶୀଘ୍ର ସମ୍ଭବ ହୋଇପାରିଥିଲା। ଧୀରେ ଧୀରେ ମୋର କାର୍ଯ୍ୟକାଳ ପୂରି ଆସୁଥିଲା। କିନ୍ତୁ ମୋର କାର୍ଯ୍ୟ ଦକ୍ଷତା ଓ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ସହିତ ଥିବା ସୁସମ୍ପର୍କକୁ ଦୃଷ୍ଟିରେ ରଖି ମୋ କାର୍ଯ୍ୟକାଳକୁ ଆହୁରି ଗୋଟିଏ ବର୍ଷ ବୃଦ୍ଧି କରିଦେଇଥିଲେ। ଫଳରେ ମୁଁ ମୋର ସମସ୍ତ କାର୍ଯ୍ୟକାଳକୁ ସୁରୁଖୁରୁରେ ସମାପ୍ତ କରି ୨୦୨୧ ମସିହା ଜୁଲାଇ ମାସ ୧୨ ତାରିଖ ଦିନ ନିଜ ଘରକୁ ଫେରିଆସିଲି। ଏହା ପୂର୍ବରୁ ୧୯୧୬ ମସିହାରେ ମୁଁ ରାଞ୍ଚିସ୍ଥିତ କଶ୍ୟପ ମେମୋରିଆଲ ଚକ୍ଷୁ ଚିକିତ୍ସାଳୟରେ ଚକ୍ଷୁଦାନ ପାଇଁ ଅନୁବନ୍ଧିତ ହୋଇଥିଲି।"

ସେତେବେଳକୁ ରାଇରଙ୍ଗପୁର ନିକଟ ମହୁଲଡିହାଠାରେ ଦ୍ରୌପଦୀ ମୁର୍ମୁଙ୍କର ନୂତନ ଗୃହ ନିର୍ମାଣ ହୋଇସାରିଥିଲା। ସେଠାରେ ରହି ସେ ଭାବୁଥିଲେ- "ଏବେ ମୁଁ ଏଇଠି ରହି ଏକ ବନ୍ଧନମୁକ୍ତ ତଥା ଦାୟିତ୍ୱମୁକ୍ତ ଜୀବନଯାପନ କରିବି। କିନ୍ତୁ ବିଧିର ବିଧାନ ଭିନ୍ନ ଥିଲା। ବହୁ ଯନ୍ତ୍ରଣାରେ ଆହତ ହୋଇଥିବା ଦ୍ରୌପଦୀଙ୍କ ସଂଘର୍ଷମୟ ଜୀବନରେ ପୁଣିଥରେ ଉତ୍ଥାନର ସମୟ ଫେରି ଆସିଲା।



## ରାଷ୍ଟ୍ରମୁଖ୍ୟ ରାଷ୍ଟ୍ରପତିଙ୍କ ନିର୍ବାଚନ ହୁଏ କେମିତି ?

ଭାରତୀୟ ସମ୍ବିଧାନ ଅନୁସାରେ ରାଷ୍ଟ୍ରପତିଙ୍କର କାର୍ଯ୍ୟକାଳ ହେଉଛି ପାଞ୍ଚବର୍ଷ। ପ୍ରତି ପାଞ୍ଚବର୍ଷରେ ଥରେ ରାଷ୍ଟ୍ରପତି ନିର୍ବାଚନ ହୋଇଥାଏ। ସାଧାରଣ ନିର୍ବାଚନଠାରୁ ରାଷ୍ଟ୍ରପତି ନିର୍ବାଚନର ନୀତିନିୟମ ଭିନ୍ନ। ଏଥିପାଇଁ ଦେଶର ସର୍ବସାଧାରଣ ନାଗରିକ ବା ଭୋଟରମାନେ ମତଦାନ କରିପାରନ୍ତି ନାହିଁ। ଏହି ନିର୍ବାଚନକୁ ପରୋକ୍ଷ ନିର୍ବାଚନ କୁହାଯାଏ। ଏହି ନିର୍ବାଚନ ପାଇଁ ଗୋଟିଏ ନିର୍ବାଚନ ମଣ୍ଡଳୀ ବା ଇଲେକ୍ଟୋରାଲ କଲେଜ ରହିଛି। ଭାରତର ନିର୍ବାଚିତ ଲୋକସଭାର ସବୁ ସାଂସଦ ଓ ରାଜ୍ୟସଭାର ସବୁ ସଭ୍ୟ ଏବଂ ସବୁ ରାଜ୍ୟରେ ଥିବା ବିଧାନସଭାର ସଭ୍ୟମାନେ ଏହାର ସଦସ୍ୟ ରହିଥା'ନ୍ତି। କିନ୍ତୁ ବିଭିନ୍ନ କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିବା ବାରଜଣ ମନୋନୀତ ହୋଇଥିବା ରାଜ୍ୟସଭାର ସଭ୍ୟ ଏହାର ସଦସ୍ୟ ନୁହନ୍ତି। ସେହିପରି ବିଭିନ୍ନ ରାଜ୍ୟରେ ଥିବା ବିଧାନ ପରିଷଦର ସଭ୍ୟମାନେ ମଧ୍ୟ ଇଲେକ୍ଟୋରାଲ କଲେଜର ସଦସ୍ୟ ନୁହନ୍ତି। କିନ୍ତୁ କେନ୍ଦ୍ରଶାସିତ ଅଞ୍ଚଳ ଘୋଷିତ ରାଜ୍ୟରେ ଯେଉଁଠି ବିଧାନସଭା ରହିଛି, ଯଥା-ଦିଲ୍ଲୀ ଓ ପୁଡୁଚେରି ରାଜ୍ୟର ବିଧାନସଭା ସଦସ୍ୟମାନେ ମଧ୍ୟ ଇଲେକ୍ଟୋରାଲ କଲେଜର ସଦସ୍ୟ ରହିଛନ୍ତି। ଜମ୍ମୁ ଓ କାଶ୍ମୀର ରାଜ୍ୟରେ ଏବେ ନୂତନ ବିଧାନସଭା ଗଠିତ ହୋଇ ନ ଥିବାରୁ ସେ ରାଜ୍ୟରେ ବର୍ତ୍ତମାନ କେହି ସଦସ୍ୟ ନାହାନ୍ତି। ସାଧାରଣ ନିର୍ବାଚନରେ ଜଣେ ପ୍ରାର୍ଥୀଙ୍କୁ ମାତ୍ର ଗୋଟିଏ ଭୋଟ ଦିଆଯାଇଥାଏ, କିନ୍ତୁ ରାଷ୍ଟ୍ରପତି ନିର୍ବାଚନରେ ପ୍ରଥମ ପସନ୍ଦ ଓ ଦ୍ୱିତୀୟ ପସନ୍ଦ ଭାବରେ ମତଦାନ କରାଯାଇଥାଏ।



ଆମ ଲୋକସଭାର ସଦସ୍ୟ ସଂଖ୍ୟା ରହିଛି-୫୪୩ ଓ ରାଜ୍ୟସଭାର ନିର୍ବାଚିତ ସଭ୍ୟସଂଖ୍ୟା ହେଉଛି-୨୩୩। ସେହିପରି ଦେଶର ସବୁ ରାଜ୍ୟ ବିଧାନସଭାର ସଦସ୍ୟ ସଂଖ୍ୟା ହେଉଛି- ୪,୧୨୦। ତେଣୁ ଏହି ନିର୍ବାଚନ ପାଇଁ ଭୋଟର ସଂଖ୍ୟା ହେଉଛି-୪,୮୯୬। ଭାରତର ରାଷ୍ଟ୍ରପତି ପଦ ପାଇଁ ଯେଉଁମାନେ ପ୍ରାର୍ଥୀପତ୍ର ବା ମନୋନୟନ ପତ୍ର ଦାଖଲ କରିବାକୁ ଆଗ୍ରହୀ, ସେମାନଙ୍କୁ ଅମାନତ ପନ୍ଦର ହଜାର ଟଙ୍କା ଜମା କରିବାକୁ ପଡ଼ିଥାଏ। ତାଙ୍କର ବୟସ ୩୫ ବର୍ଷରୁ କମ ହୋଇ ନ ଥିବ। ସେ କୌଣସି ଲାଭଜନକ ସରକାରୀ ବା ବେସରକାରୀ ସଂସ୍ଥାରେ ସେ ଚାକିରି କରୁ ନ ଥିବେ। କିମ୍ଵା ଦେବାଳିଆ ଘୋଷିତ ହୋଇ ନଥିବେ। ପାର୍ଲିଆମେଣ୍ଟର ସଦସ୍ୟ ହେବାପାଇଁ ତାଙ୍କର ସବୁ ପ୍ରକାର ଯୋଗ୍ୟତା ରହିଥିବ। ତାଙ୍କ ପ୍ରାର୍ଥିତ୍ୱକୁ ଅତିକମରେ ୫୦ ଜଣ ସାଂସଦ ପ୍ରସ୍ତାବକ ଓ ୫୦ ଜଣ ସଦସ୍ୟ ସମର୍ଥକ ଥିବା ଦରକାର।

ଇଲେକ୍ଟୋରାଲ କଲେଜର ସଦସ୍ୟମାନଙ୍କର ଭୋଟର ମୂଲ୍ୟ ମଧ୍ୟ ନିର୍ଦ୍ଧାରଣ କରାଯାଇଥାଏ। ଅବଶ୍ୟ ଏହା ଏକ ଜଟିଳ ପ୍ରକ୍ରିୟା। ସବୁ ସାଂସଦଙ୍କର ଭୋଟର ମୂଲ୍ୟ ସମାନ ଥାଏ ସତ, କିନ୍ତୁ ବିଭିନ୍ନ ରାଜ୍ୟ ବିଧାନସଭାର ସଭ୍ୟମାନଙ୍କର ଭୋଟର ମୂଲ୍ୟ ଭିନ୍ନ ଭିନ୍ନ ହୋଇଥାଏ। ରାଜ୍ୟର ମୋଟ ଲୋକସଂଖ୍ୟାକୁ ଏହାର ବିଧାନସଭାର ସଭ୍ୟ ସଂଖ୍ୟାରେ ଭାଗକରି ଭାଗଫଳକୁ ୧୦୦୦ରେ ଗୁଣନ କଲେ, ପ୍ରତ୍ୟେକ ସଭ୍ୟଙ୍କର ଭୋଟର ମୂଲ୍ୟ ଜଣାପଡ଼େ। ସେହି ଅନୁସାରେ ବର୍ତ୍ତମାନ ଉତ୍ତର ପ୍ରଦେଶର ବିଧାନସଭା ସଭ୍ୟମାନଙ୍କର ଭୋଟର ମୂଲ୍ୟ ରହିଛି-ଭାରତର ମୂଲ୍ୟ ସର୍ବାଧିକ ୧୭୫। ସେହିପରି ସିକିମ ରାଜ୍ୟର ସଭ୍ୟମାନଙ୍କ ଭୋଟର ମୂଲ୍ୟ ସର୍ବନିମ୍ନ ଅର୍ଥାତ-୦୭। ଆମ ରାଜ୍ୟ ଓଡ଼ିଶାର ବିଧାନସଭା ସଭ୍ୟଙ୍କର ଭୋଟର ମୂଲ୍ୟ ରହିଛି-୧୪୯।

ସାରାଦେଶର ପ୍ରତ୍ୟେକ ସାଂସଦମାନଙ୍କର ଭୋଟ ମୂଲ୍ୟ ବର୍ତ୍ତମାନ ୭୦୮ ହେବାକଥା, କିନ୍ତୁ ଜମ୍ମୁ ଓ କାଶ୍ମୀରରେ ବିଧାନସଭା ଗଠିତ ହୋଇ ନ ଥିବାରୁ ସେମାନଙ୍କର ଭୋଟ ମୂଲ୍ୟ ହ୍ରାସପାଇ ବର୍ତ୍ତମାନ ରହିଛି ମାତ୍ର ୭୦୦।

ଚଳିତ ବର୍ଷ ନିର୍ବାଚନ ବେଳେ ସମଗ୍ର ଦେଶର ଭୋଟ ମୋଟ ମୂଲ୍ୟ ରହିଛି- ୧୦,୮୬,୪୩୧ । ଏହି ସଂଖ୍ୟାରୁ ଯେଉଁ ପ୍ରାର୍ଥୀ ଅଧାରୁ ଅଧିକ ପାଆନ୍ତି, ସେ ରାଷ୍ଟ୍ରପତି ଭାବେ ନିର୍ବାଚିତ ହୋଇଥା'ନ୍ତି । ଯଦି କେହି ଅଧାରୁ ଅଧିକ ଭୋଟ ନ ପାଆନ୍ତି, ତେବେ ଦ୍ୱିତୀୟ ପସନ୍ଦର ପ୍ରାର୍ଥୀଙ୍କ ଭୋଟ ମୂଲ୍ୟକୁ ମିଶାଇ ଫଳାଫଳ ଘୋଷଣା କରାଯାଏ ।

**ରାଷ୍ଟ୍ରପତି ନିର୍ବାଚନ-୨୦୨୨:**

ପୂର୍ବତନ ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦଙ୍କର କାର୍ଯ୍ୟକାଳ ୨୦୨୨ ଜୁଲାଇ ମାସ ୨୫ ତାରିଖ ଶେଷ ହେବାର ଥିଲା । ତେଣୁ ପରବର୍ତ୍ତୀ ରାଷ୍ଟ୍ରପତି ପଦପାଇଁ ଯୋଗ୍ୟ ବ୍ୟକ୍ତିଙ୍କୁ ପ୍ରାର୍ଥୀ କରିବା ଉଦ୍ଦେଶ୍ୟରେ ବିଭିନ୍ନ ରାଜନୈତିକ ଦଳ ବିଶେଷକରି କ୍ଷମତାସୀନ ଏନଡିଏ ମେଣ୍ଟ ସରକାରରେ ଆଲୋଚନା ଚାଲିଲା । ବିଭିନ୍ନ ଅଞ୍ଚଳରେ ଥିବା ନେତୃମଣ୍ଡଳୀ ମଧ୍ୟରୁ ବହୁନେତାଙ୍କ ନାମ ଆଗକୁ ଆସିଥିଲା । ଅତୀତରେ ରାଷ୍ଟ୍ରପତି ହୋଇଥିବା ବିଶିଷ୍ଟ ବ୍ୟକ୍ତିମାନେ ବିଭିନ୍ନ ଧର୍ମରୁ, ବିଭିନ୍ନ ବର୍ଗରୁ ଓ ବିଭିନ୍ନ ଅଞ୍ଚଳରୁ ନିର୍ବାଚିତ ହୋଇଥିଲେ । କିନ୍ତୁ ଗୋଟିଏ ଦିଗପ୍ରତି ସମସ୍ତେ ଏକ ପ୍ରକାର ଉଦାସୀନ ହୋଇରହିଥିଲେ ।

୨୦୧୧ ମସିହାର ଜନଗଣନା ଅନୁସାରେ ଆମ'ଦେଶର ସମୁଦାୟ ଲୋକସଂଖ୍ୟା ମଧ୍ୟରୁ ଆଦିବାସୀ ବା ଜନଜାତି ବର୍ଗର ଲୋକ ପ୍ରାୟ ନଅରୁ ଦଶ ପ୍ରତିଶତ ରହିଛନ୍ତି । ସେମାନଙ୍କ ମଧ୍ୟରୁ ମାତ୍ର ୧୦.୦୩ ପ୍ରତିଶତ ଲୋକ ସହରାଞ୍ଚଳରେ ଓ ୮୯.୯୭ ପ୍ରତିଶତ ଲୋକ ଗ୍ରାମାଞ୍ଚଳରେ ବାସବାସ କରନ୍ତି । ଏବେ ମଧ୍ୟ ସେହି ଚିତ୍ର ଅପରିବର୍ତ୍ତିତ ରହିଛି । କେବଳ ସେତିକି ନୁହେଁ, ଜନଜାତି ସଂପ୍ରଦାୟ ଲୋକେ ବସବାସ କରୁଥିବା ଗ୍ରାମଗୁଡ଼ିକ ମଧ୍ୟରୁ ଅଧିକାଂଶ ଏବେ ସୁଦ୍ଧା ଅଗମ୍ୟ ହୋଇରହିଛି । ୨୦୧୭ ମସିହାରେ ପ୍ରକାଶିତ କେନ୍ଦ୍ର ଜନଜାତି ମନ୍ତ୍ରାଳୟର ରିପୋର୍ଟ ସ୍ୱୀକାର କରିଛି ଯେ, ଏବେ ମଧ୍ୟ ଆଦିବାସୀମାନଙ୍କର ସ୍ଥିତି ଚିନ୍ତାଜନକ । ୟୁନିସେଫ ଦ୍ୱାରା ପ୍ରସ୍ତୁତ ଏକ ଆକଳନରୁ ଜଣାଯାଏ ଯେ, ଭାରତୀୟ ଜନଜାତିଙ୍କ ମଧ୍ୟରେ ପ୍ରାୟ ପାଞ୍ଚ ନିୟୁତ ଶିଶୁ କୁପୋଷଣର ଶିକାର ହେଉଛନ୍ତି ।



ସରକାରଙ୍କ ଦ୍ୱାରା ଜନଜାତି ଲୋକମାନଙ୍କର ଉନ୍ନତି ଓ ବିକାଶ ଉଦ୍ଦେଶ୍ୟରେ ବିଭିନ୍ନ ପ୍ରକାର ଯୋଜନା ଅବଶ୍ୟ ଦେଶରେ କାର୍ଯ୍ୟକାରୀ କରାଯାଇଛି । କିନ୍ତୁ ସେ ଦିଗରେ ଆନ୍ତରିକତା ଓ ନିଷ୍ଠାର ଅଭାବ, ପରିଚାଳନା ଓ କାର୍ଯ୍ୟ ରୂପାୟନ କ୍ଷେତ୍ରରେ ଅନାଗ୍ରହ, ବାଟ ମାରଣା, ପ୍ରଶାସନିକ ଦୁର୍ନୀତି କାରଣରୁ ସେ ସମସ୍ତ ଯୋଜନାରୁ ଆଶାନୁରୂପ ସୁଫଳ ଜନଜାତି ସମୁଦାୟକୁ ମିଳି ପାରି ନାହିଁ । ଜନଜାତି ସମ୍ପ୍ରଦାୟ ପାଇଁ ଅବଶ୍ୟ ସଂରକ୍ଷଣ ବ୍ୟବସ୍ଥା ରହିଛି । ଫଳରେ ଜନଜାତି ବର୍ଗରୁ କେନ୍ଦ୍ର ସରକାର ଓ ବିଭିନ୍ନ ରାଜ୍ୟ ସରକାରରେ ସେମାନଙ୍କର ସହଭାଗିତା ରହିଆସୁଛି । କିନ୍ତୁ ଅନ୍ୟବର୍ଗ ଭଳି ଜନଜାତି ବର୍ଗରୁ କେହି ଜଣେ ବି ଦେଶର ସର୍ବୋଚ୍ଚ ସାମ୍ବିଧାନିକ ପଦବୀରେ ଆସୀନ ହୋଇପାରି ନାହାନ୍ତି ।

ଏହି ସମ୍ପର୍କରେ ସରକାରରେ ଥିବା ନେତୃମଣ୍ଡଳୀ ଦୀର୍ଘଦିନ ଧରି ମନ୍ଥନ କରୁଥିଲେ । ପ୍ରଧାନମନ୍ତ୍ରୀ ଓ ଗୃହ ମନ୍ତ୍ରୀଙ୍କ ନେତୃତ୍ୱରେ ଗଠିତ କମିଟି ସର୍ବସମ୍ମତି କ୍ରମେ ଶ୍ରୀମତୀ ଦ୍ରୌପଦୀ ମୁର୍ମୁଙ୍କ ନାମକୁ ଅନୁମୋଦନ କରିଦେଲେ । ସେ ଏନଡ଼ିଏ ସରକାରଙ୍କ ତରଫରୁ ପ୍ରାର୍ଥୀ ଭାବେ ମନୋନୀତ ହୋଇଗଲେ । ଏହା ପୂର୍ବରୁ ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟନାୟକଙ୍କ ସହିତ ଏ'ସମ୍ପର୍କରେ ଆଲୋଚନା କରିଥିଲେ । ତାଙ୍କର ସମର୍ଥନ ପାଇଁ ମଧ୍ୟ ଆଶା ରଖିଥିଲେ ।

ଓଡ଼ିଶାର ଜନଜାତିରୁ ଜଣେ ଅଭିଜ୍ଞ ନାରୀ ଭାରତର ସର୍ବୋଚ୍ଚ ସାମ୍ବିଧାନିକ ପଦବୀ ପାଇଁ ପ୍ରାର୍ଥୀହେବା ଖବରଟି ମୁଖ୍ୟମନ୍ତ୍ରୀଙ୍କୁ ଆହ୍ଲାଦିତ କରିଥିଲା । ସେ ବିଦେଶରେ ଥାଇ ତାଙ୍କୁ ପୂର୍ଣ୍ଣ ସମର୍ଥନ ଦେବାକୁ ପ୍ରତିଶ୍ରୁତି ଦେବା ସଙ୍ଗେ ସଙ୍ଗେ ଦ୍ରୌପଦୀ ଭଉଣୀଙ୍କୁ ଦଳମତ ନିର୍ବିଶେଷରେ ସମସ୍ତେ ସମର୍ଥନ କରନ୍ତୁ ବୋଲି ବିରୋଧୀ ଦଳର ସଭ୍ୟମାନଙ୍କୁ ଅନୁରୋଧ କରିଥିଲେ । ଅବଶ୍ୟ ତାଙ୍କୁ ଏଥିପାଇଁ ଅନ୍ୟ ଦଳର ନେତାମାନେ ସମାଲୋଚନା କରିଥିଲେ ।

ଜଣେ ଜନଜାତିର ନେତ୍ରୀ ରାଷ୍ଟ୍ରପତି ପଦବୀପାଇଁ ପ୍ରାର୍ଥୀହେବା ଖବର ସମଗ୍ର ଦେଶରେ ଚହଳ ସୃଷ୍ଟିକଲା । ବିଶେଷକରି ଭାରତର ବିଭିନ୍ନ ଅଞ୍ଚଳରେ ଥିବା ଜନଜାତିର ଲୋକମାନେ ଏହି ସମ୍ବାଦ ଶୁଣି ଉଲ୍ଲସିତ ହୋଇଉଠିଲେ ।

କେତେକ ବିରୋଧୀ ଦଳର ସଭ୍ୟମାନେ ମଧ୍ୟ ଦ୍ରୌପଦୀ ମୁର୍ମୁଙ୍କ ପ୍ରାର୍ଥିତ୍ୱକୁ ସମର୍ଥନ କରିବାରେ ଲାଗିଲେ।

କେନ୍ଦ୍ରର ଶୀର୍ଷନେତାଙ୍କ ନିଷ୍ପତ୍ତିକ୍ରମେ ଦ୍ରୌପଦୀ ମୁର୍ମୁ ପ୍ରାର୍ଥୀପତ୍ର ଦାଖଲ କରିବାକୁ ଦିଲ୍ଲୀ ଯାତ୍ରା ଆରମ୍ଭ କଲେ। ସେଦିନ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ସମେତ ବିଜେଡ଼ି ଶାସକ ଦଳର ନେତାମାନଙ୍କ ସହିତ ବିଭିନ୍ନ ବର୍ଗର ଜନସାଧାରଣ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଓ ଶୁଭେଚ୍ଛା ଜଣାଇଥିଲେ, ଯାହା ଥିଲା ଅଭୂତପୂର୍ବ। ସେହିଦିନଠାରୁ ଓଡ଼ିଶାର ବିଭିନ୍ନ କୋଣରେ ସତେ ଯେମିତି ଉତ୍ସବ ଲାଗି ରହିଲା।

ନେତାମାନଙ୍କ ଦ୍ୱାରା ନିର୍ଦ୍ଧାରିତ ଦିନ ଜୁନମାସ ୨୩ ତାରିଖରେ ସେ ରାଷ୍ଟ୍ରପତି ପ୍ରାର୍ଥୀ ଭାବରେ ନିଜର ନାମାଙ୍କନ ପତ୍ର ଦାଖଲ କରିବାକୁ ବାହାରିଲେ। ତାଙ୍କ ସହିତ ଭାରତର ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦୀ, ସ୍ୱରାଷ୍ଟ୍ର ମନ୍ତ୍ରୀ ଅମିତ ଶାହା, ପ୍ରତିରକ୍ଷା ମନ୍ତ୍ରୀ ରାଜନାଥ ସିଂହ, ପରିବହନ ମନ୍ତ୍ରୀ ନୀତିନ ଗଡ଼କରୀ, ବାଣିଜ୍ୟ ମନ୍ତ୍ରୀ ପୀୟୂଷ ଗୋୟଲ, ବିଜେପି ଦଳର ସଭାପତି ଜେପି ନଡ୍ଡା, ଯୋଗୀ ଆଦିତ୍ୟ ନାଥ, ଶିବରାଜ ସିଂହ, ପ୍ରମୋଦ ସାୱନ୍ତ, ଏନ ବିରେନ ସିଂହ, ହେମନ୍ତ ବିଶ୍ୱଶର୍ମା ପ୍ରଭୃତି ବିଶିଷ୍ଟ ନେତାମାନେ ଯାଇଥିଲେ। ସେମାନେ ମିଳିତ ଭାବରେ ରିଟର୍ଣ୍ଣିଂ ଅଫିସର ଶ୍ରୀ ପି. ସି. ମୋଦୀଙ୍କ ନିକଟରେ ନାମାଙ୍କନ ପତ୍ର ଦାଖଲ କଲେ।

ଦ୍ରୌପଦୀ ମୁର୍ମୁଙ୍କ ନାମାଙ୍କନ ପତ୍ରରେ ପଚାଶ ଜଣ ପ୍ରସ୍ତାବକ ଓ ପଚାଶ ଜଣ ସମର୍ଥକ ରହିଥିଲେ। ସେଥିମଧ୍ୟରୁ ବିଜେପି ଦଳ ତରଫରୁ ବାରଜଣ ବିଧାୟକ ପ୍ରସ୍ତାବକ ଥିଲେ। କେନ୍ଦ୍ର ସଂସଦୀୟ ବ୍ୟାପାର ମନ୍ତ୍ରୀ ପ୍ରହଲ୍ଲାଦ ଯୋଶୀ , ବିଜେପି ସାଂସଦ ଅରୁଣ ସିଂହ ଏବଂ ଓଡ଼ିଶାରୁ ତିନିଜଣ କେନ୍ଦ୍ରମନ୍ତ୍ରୀ ଯଥା-ଧର୍ମେନ୍ଦ୍ର ପ୍ରଧାନ, ଅଶ୍ୱିନୀ ବୈଷ୍ଣବ ଓ ବିଶ୍ୱେଶ୍ୱର ଟୁଡୁଙ୍କ ଉପସ୍ଥିତିରେ ଓଡ଼ିଶାର ବିଧାୟକମାନେ ଦସ୍ତଖତ କରିଥିଲେ।

ନାମାଙ୍କନ ପତ୍ର ଦାଖଲ କରିବା ପୂର୍ବରୁ ପ୍ରାର୍ଥୀ ଦ୍ରୌପଦୀ ମୁର୍ମୁ ବିରୋଧୀ ତୃଣମୂଳ କଂଗ୍ରେସ ନେତ୍ରୀ ମମତା ବାନାର୍ଜୀ, କଂଗ୍ରେସ ସଭାପତି ସୋନିଆ ଗାନ୍ଧୀ ଓ ଏନସିପି ମୁଖ୍ୟ ଶରତ ପାୱାରଙ୍କୁ ଫୋନ୍‌କରି ସମର୍ଥନ ଲୋଡ଼ିଥିଲେ। ସେମାନେ

ମଧ୍ୟ ତାଙ୍କର ସଫଳତା କାମନାକରି ଶୁଭେଚ୍ଛା ଜଣାଇଥିଲେ, କିନ୍ତୁ ପରେ ତାଙ୍କ ବିରୁଦ୍ଧରେ ପୂର୍ବତନ କେନ୍ଦ୍ରମନ୍ତ୍ରୀ ତଥା ତୃଣମୂଳ କଂଗ୍ରେସର ନେତା ଶ୍ରୀ ଯଶୋବନ୍ତ ସିହ୍ନାଙ୍କୁ ବିରୋଧୀ ୟୁପିଏ ମେଣ୍ଟ ତରଫରୁ ପ୍ରାର୍ଥୀ ଭାବରେ ଘୋଷଣା କରାଗଲା। ସମସ୍ତ ବିରୋଧୀ ଦଳର ନେତା ଏକଜୁଟ ହୋଇ ତାଙ୍କୁ ସମର୍ଥନ କରି ଦ୍ରୌପଦୀ ମୁର୍ମୁଙ୍କୁ ହରାଇଦେବାକୁ ଆପ୍ରାଣ ଚେଷ୍ଟା କଲେ। ପ୍ରାର୍ଥୀପତ୍ର ଦାଖଲ କରିବା ପରେ ଦୁଇଜଣ ରାଷ୍ଟ୍ରପତି ପ୍ରାର୍ଥୀ ବିଭିନ୍ନ ରାଜ୍ୟକୁ ଯାଇ ନିଜ ନିଜ ସପକ୍ଷରେ ଭୋଟ ଦେବାକୁ ଅନୁରୋଧ କରିଥିଲେ। କିନ୍ତୁ ଦିନକୁ ଦିନ ବିଭିନ୍ନ ରାଜ୍ୟରେ ଥିବା ବିଧାୟକ ଓ ସରକାରରେ ଥିବା ନେତୃବୃନ୍ଦ ଦ୍ରୌପଦୀ ମୁର୍ମୁଙ୍କ ଆଡ଼କୁ ଢଳି ଚାଲିଲେ।

ଓଡ଼ିଶା ପରେ ପରେ ତେଲେଙ୍ଗାନା, ମହାରାଷ୍ଟ୍ର ଓ ଝାଡ଼ଖଣ୍ଡ ରାଜ୍ୟ ସରକାର ଦ୍ରୌପଦୀ ମୁର୍ମୁଙ୍କୁ ସମର୍ଥନ କରିବାକୁ ଆଗୁଆ ଘୋଷଣା କରିଦେଲେ। ଫଳରେ ବିରୋଧୀ ଦଳରେ ଥିବା ଏକତା ଭାଙ୍ଗିଗଲା। ବିଭିନ୍ନ ରାଜ୍ୟରେ ଥିବା ଆଦିବାସୀ ସଂପ୍ରଦାୟର ବିଧାୟକ ଓ ସାଂସଦମାନେ ମଧ୍ୟ ଦ୍ରୌପଦୀ ମୁର୍ମୁଙ୍କୁ ସମର୍ଥନ କରିବାକୁ ମନସ୍ଥ କରିଥିଲେ। ଫଳରେ ଦ୍ରୌପଦୀ ମୁର୍ମୁଙ୍କର ବିଜୟ ଲାଭ କରିବା ଏକ ପ୍ରକାର ନିଶ୍ଚିତ ହୋଇଯାଇଥିଲା।



**ରାଷ୍ଟ୍ରପତି ନିର୍ବାଚନ-ଫଳାଫଳ:**

ନାମାଙ୍କନ ପତ୍ର ଦାଖଲ କରିବା ଦିନଠାରୁ ସାରାଦେଶର ଲୋକେ ତଥା ବିଭିନ୍ନ ଦଳର ନେତା ଅନୁମାନ କରିନେଇଥିଲେ- ଦ୍ରୌପଦୀ ମୁର୍ମୁ ହିଁ ପରବର୍ତ୍ତୀ ରାଷ୍ଟ୍ରପତି ହେବେ। ତେଣୁ ବିଭିନ୍ନ ଅଞ୍ଚଳରେ ବିଶେଷକରି ତାଙ୍କର ଜନ୍ମସ୍ଥାନ ମୟୂରଭଞ୍ଜ ଜିଲ୍ଲାର ଆଦିବାସୀ ସାନ୍ତାଳ ସମ୍ପ୍ରଦାୟରେ ତାଙ୍କପାଇଁ ପାରମ୍ପରିକ ପୂଜା-ପାଠ ସମେତ ନୃତ୍ୟ-ଗୀତର ଉତ୍ସବ ଲାଗି ରହିଥିଲା। ତାଙ୍କର ସଫଳତା କାମନା କରି ବିଭିନ୍ନ ସ୍ଥାନରେ ଯଜ୍ଞ, ଦୀପଦାନର କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହେଉଥିଲା। ନିର୍ବାଚନ ସମୟ ଯେତେ ପାଖେଇ ଆସୁଥିଲା-ଦ୍ରୌପଦୀ ମୁର୍ମୁଙ୍କ ପ୍ରତି ସେତେ ଅଧିକ ସମର୍ଥନ ମିଳିବ ବୋଲି ସୂଚନା ମିଳୁଥିଲା।

ନିର୍ଦ୍ଧାରିତ ସମୟରେ ଅର୍ଥାତ ଜୁଲାଇ ମାସ ୧୮ ତାରିଖ ଦିନ ସାରା ଦେଶରେ ରାଷ୍ଟ୍ରପତି ନିର୍ବାଚନ ଚାଲିଲା। ଦିଲ୍ଲୀ ସମେତ ସମସ୍ତ ରାଜ୍ୟର ରାଜଧାନୀରେ ଥିବା ବିଧାନସଭା ଗୃହରେ ବିଧାୟକ ଓ ସାଂସଦମାନେ ନିଜ ପସନ୍ଦର ପ୍ରାର୍ଥୀଙ୍କୁ ଭୋଟଦାନ କଲେ। ଅତୀତରେ ଅନ୍ୟ ନିର୍ବାଚନଠାରୁ ଏହି ନିର୍ବାଚନ ଅତ୍ୟନ୍ତ ରୋଚକ ଥିଲା। ଭୋଟର ବିଧାୟକ ଓ ସାଂସଦମାନେ ସଂଶୟ ଭିତରେ ରହିଥିଲେ। ତଥାପି ସମସ୍ତେ ଅତ୍ୟନ୍ତ ଉତ୍ସାହର ସହିତ ଭୋଟଦାନ କରିବାକୁ ଆଗେଇ ଆସିଥିଲେ। ଏନଡ଼ିଏ ପ୍ରାର୍ଥୀ ଦ୍ରୌପଦୀ ମୁର୍ମୁ ଓ ୟୁପିଏ ପ୍ରାର୍ଥୀ ଯଶୋବନ୍ତ ସିହ୍ନାଙ୍କ ମଧ୍ୟରେ ପ୍ରତ୍ୟକ୍ଷ ପ୍ରତିଦ୍ୱନ୍ଦ୍ୱିତା ହୋଇଥିଲା। ଏଥିରେ ୯୯.୧୮ ପ୍ରତିଶତ ଭୋଟର ଭୋଟଦାନ କରିଥିଲେ। ଅତ୍ୟନ୍ତ ଅସୁସ୍ଥ ଅବସ୍ଥାରେ ଥିବା କେତେଜଣ ଭୋଟର ଏହି ଭୋଟଦାନରୁ ବଞ୍ଚିତ ହୋଇଥିଲେ। ଆଉ କେତେକ ନେତା ଜେଲରେ ଥିବାରୁ ସେମାନେ ଭୋଟ ଦେବାକୁ ଆସିପାରି ନ ଥିଲେ। କିନ୍ତୁ କେତେଜଣ ନେତା ଅସୁସ୍ଥତା ସତ୍ତ୍ୱେ ହ୍ୱିଲ ଚେୟାରରେ ବସି ଭୋଟ ଦେବାକୁ ଆସିଥିଲେ। ଏହି ନିର୍ବାଚନରେ ଦିଲ୍ଲୀର ସଂସଦ ଭବନରେ ମୋଟ ୭୨୭ ଜଣ ସାଂସଦ ଓ ନଅ ଜଣ ବିଧାୟକଙ୍କୁ ମିଶାଇ ୭୩୭ ଜଣ ଭୋଟରଙ୍କୁ ମତଦାନ କରିବାକୁ

ଅନୁମତି ମିଳିଥିଲା। କିନ୍ତୁ ମୋଟ ୭୧୯ ଜଣ ମତଦାନ କରିପାରିଥିଲେ। ବିଭିନ୍ନ ରାଜ୍ୟରେ ଅନୁଷ୍ଠିତ ନିର୍ବାଚନରେ ଅନେକ ୟୁପିଏ ମେଣ୍ଟର ସଭ୍ୟ ନିଜ ଦଳର ନିର୍ଦ୍ଦେଶକୁ ନ ମାନି ଏନଡ଼ିଏ ପ୍ରାର୍ଥୀଙ୍କ ସପକ୍ଷରେ ଭୋଟ ଦେଇଥିଲେ।

ଧାର୍ଯ୍ୟ କାର୍ଯ୍ୟସୂଚୀ ଅନୁସାରେ ଜୁଲାଇ ମାସ ୨୧ ତାରିଖ ଦିନ ଭୋଟ ଗଣନା କରାଯାଇ ଫଳାଫଳ ଘୋଷଣା କରାଯାଇଥିଲା। ସେଥିରୁ ଜଣାପଡ଼ିଲା- ଇତିହାସ ସୃଷ୍ଟିକରି ଓଡ଼ିଆ ଝିଅ, କଳିଙ୍ଗ କନ୍ୟା ତଥା ଉତ୍କଳ ନନ୍ଦିନୀ ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ୭୦ ପ୍ରତିଶତରୁ ଅଧିକ ଭୋଟ ପାଇ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ପ୍ରାର୍ଥୀ ଯଶୋବନ୍ତ ସିହ୍ନାଙ୍କୁ ପରାଜିତ କରିଦେଇଛନ୍ତି।

ଏହି ନିର୍ବାଚନରେ ୭୭୧ ଜଣ ସାଂସଦ ଓ ୪,୦୨୫ ଜଣ ବିଧାୟକଙ୍କୁ ମିଶାଇ ମୋଟ ୪,୭୯୬ ଇଲେକଟୋରାଲ କଲେଜର ସଦସ୍ୟ ମତଦାନ କରିଥିଲେ। ଦ୍ରୌପଦୀ ମୁର୍ମୁଙ୍କ ସପକ୍ଷରେ ୪୪ଟି ରାଜନୈତିକ ଦଳ ଓ ଯଶୋବନ୍ତ ସିହ୍ନାଙ୍କ ସପକ୍ଷରେ ୩୪ଟି ରାଜନୈତିକ ଦଳର ସମର୍ଥନ ଥିଲା। ସେହିପରି ଦଶଟି ରାଜ୍ୟରୁ ଦ୍ରୌପଦୀଙ୍କୁ ପୂର୍ଣ୍ଣ ସମର୍ଥନ ମିଳିଥିଲା।

ଏଠାରେ ସୂଚନା ଯୋଗ୍ୟ ଯେ, ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ଏକାଧିକ ପ୍ରଥମ ରେକର୍ଡ଼ର ଅଧିକାରିଣୀ ହୋଇପାରିଥିଲେ। ଓଡ଼ିଶାରୁ ରାଷ୍ଟ୍ରପତି ପଦପାଇଁ ପ୍ରାର୍ଥୀ ହେବାରେ ସେ ଯେମିତି ପ୍ରଥମ, ସେହିପରି ୨୦୧୫ ମସିହାରେ ଝାଡ଼ଖଣ୍ଡ ରାଜ୍ୟର ରାଜ୍ୟପାଳ ହେବାରେ ସେ ଥିଲେ ପ୍ରଥମ ମହିଳା ରାଜ୍ୟପାଳ। ଆଦିବାସୀ ସଂପ୍ରଦାୟ ମଧ୍ୟରୁ ସେ ରାଜ୍ୟପାଳ ହେବାରେ ଥିଲେ ପ୍ରଥମ। କାଉନସିଲର ପଦରୁ ବିଧାୟକ ଓ ମନ୍ତ୍ରୀ ପରେ ରାଜ୍ୟପାଳ ଏବଂ ଶେଷରେ ଭାରତର ରାଷ୍ଟ୍ରପତି ହେବାପାଇଁ ସେ ହେଲେ ପ୍ରଥମ ଯୋଗ୍ୟା ମହିଳା। କେବଳ ସେତିକି ନୁହେଁ, ସେ ହେଲେ ସ୍ୱାଧୀନ ଦେଶରେ ଜନ୍ମଲାଭ କରିଥିବା ପ୍ରଥମ ଓ ସର୍ବ କନିଷ୍ଠ ରାଷ୍ଟ୍ରପତି।

ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦୀ ତୁରନ୍ତ ଟୁଇଟ କରି ଦେଶବାସୀଙ୍କୁ ଜଣାଇଦେଲେ-"ଭାରତ ଆଜି ନୂଆ ଇତିହାସ ସୃଷ୍ଟି କରିଛି। ଯେତେବେଳେ ୧୩୦ କୋଟି ଲୋକ ସ୍ୱାଧୀନତାର ଅମୃତ ମହୋତ୍ସବ ପାଳନ କରୁଛନ୍ତି, ସେହି



ସମୟରେ ପୂର୍ବ ଭାରତ ଓଡ଼ିଶାର ଗୋଟିଏ ଉପାନ୍ତ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିବା ଜଣେ ଆଦିବାସୀ ସଂପ୍ରଦାୟର ଝିଅ ରାଷ୍ଟ୍ରପତି ହେଉଛନ୍ତି। ଦ୍ରୌପଦୀ ମୁର୍ମୁଙ୍କ ଜୀବନର ପ୍ରାରମ୍ଭିକ ସଂଘର୍ଷ, ତାଙ୍କ ସେବା ଓ ସଫଳତା ପ୍ରତିଟି ଭାରତୀୟଙ୍କ ପାଇଁ ପ୍ରେରଣାର ଉତ୍ସ। ସେ ଆମ ନାଗରିକ ବିଶେଷକରି ଗରିବ ଓ ପଛୁଆ ବର୍ଗଙ୍କପାଇଁ ଆଶାର କିରଣ ଭାବେ ଉଭା ହୋଇଛନ୍ତି। ଦ୍ରୌପଦୀ ମୁର୍ମୁ ଜଣେ ଦକ୍ଷ ବିଧାୟିକା ଓ ମନ୍ତ୍ରୀଭାବେ କାର୍ଯ୍ୟ କରିଛନ୍ତି। ଝାଡ଼ଖଣ୍ଡ ରାଜ୍ୟର ରାଜ୍ୟପାଳ ଭାବେ ମଧ୍ୟ ସେ ଚମତ୍କାର ପାରଦର୍ଶିତା ଦେଖାଇଛନ୍ତି। ମୁଁ ନିଶ୍ଚିତ ଯେ, ସେ ଜଣେ ଦକ୍ଷତା ସମ୍ପନ୍ନ ରାଷ୍ଟ୍ରପତି ହୋଇ ଦେଶର ନେତୃତ୍ୱ ନେବେ।"

କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଶ୍ରୀ ଅମିତ ଶାହା କହିଲେ-"ଦ୍ରୌପଦୀ ମୁର୍ମୁ ରାଷ୍ଟ୍ରପତି ଭାବେ ନିର୍ବାଚିତ ହେବା ଭାରତର ଗଣତନ୍ତ୍ର ପାଇଁ ଏକ ଐତିହାସିକ ଅବସର। ଓଡ଼ିଶାର ଅତ୍ୟନ୍ତ ଗରିବ ପୃଷ୍ଠଭୂମିର ଜନଜାତିମାନଙ୍କଠାରୁ ମଧ୍ୟ ପଛୁଆ ସାନ୍ତାଳୀ ପରିବାରରୁ ଆସିଥିବା ଶ୍ରୀମତୀ ମୁର୍ମୁ ନିଜ ସଂଘର୍ଷ ଏବଂ କଠିନ ପରିଶ୍ରମ ବଳରେ ଦେଶର ସର୍ବୋଚ୍ଚ ସାମ୍ବିଧାନିକ ପଦ ପର୍ଯ୍ୟନ୍ତ ପହଞ୍ଚି ପାରିଛନ୍ତି। ଏହା ସବୁ ଦେଶବାସୀଙ୍କ ସହିତ ଜନଜାତି ସମାଜ ପାଇଁ ମଧ୍ୟ ଗୌରବମୟ ମୁହୂର୍ତ୍ତ। ଏପରି ସମାଜର କେହି ଜଣେ ଦେଶର ସର୍ବୋଚ୍ଚ ପଦ ପର୍ଯ୍ୟନ୍ତ ପହଞ୍ଚି ପାରିଛନ୍ତି, ଏହି ବାସ୍ତବତାକୁ ଦେଖିବା ଲାଗି ଦେଶକୁ ସାତ ଦଶନ୍ଧି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା। ଆଜି ଆମଦେଶର ଗଣତନ୍ତ୍ର ଅନେକ ପ୍ରଶ୍ନରୁ ମୁକ୍ତ ହୋଇପାରିଛି।

ଦେଶର ମୋଟ ଜନସଂଖ୍ୟାର ପ୍ରାୟ ଦଶ ପ୍ରତିଶତ ଯୋଗଦାନ ହେଉଛ ଆଦିବାସୀ ସଂପ୍ରଦାୟର। ସ୍ୱାଧୀନତା ଆନ୍ଦୋଳନରେ ମଧ୍ୟ ଏହି ସମାଜର ଯୋଗଦାନ ଓ ବଳିଦାନ ଅବିସ୍ମରଣୀୟ। କିନ୍ତୁ ସ୍ୱାଧୀନତା ପରେ ଯେଉଁ ସରକାରମାନେ କ୍ଷମତାରେ ରହିଥିଲେ, ସେମାନେ ଜନଜାତି ସମାଜକୁ ଉପଯୁକ୍ତ ପ୍ରତିନିଧିତ୍ୱ ପ୍ରଦାନ କରିବାରେ ସମର୍ଥ ହୋଇ ନ ଥିଲେ।"

ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମଧ୍ୟ ତାଙ୍କର ଖୁସି ବ୍ୟକ୍ତକରି କହିଥିଲେ-"ଦ୍ରୌପଦୀ ମୁର୍ମୁଙ୍କ ରାଷ୍ଟ୍ରପତି ହେବା ଓଡ଼ିଶା ପାଇଁ ଏକ ଗୌରବର



ମୁହୂର୍ତ୍ତ। ଦେଶର ପ୍ରଥମ ନାଗରିକ ହେବା ଯାଏ, ତାଙ୍କର ଯାତ୍ରା ଅନ୍ୟମାନଙ୍କ ପାଇଁ ପ୍ରେରଣାଦାୟୀ। ତାଙ୍କ ଯାତ୍ରା ମହିଳା ସଶକ୍ତିକରଣ କ୍ଷେତ୍ରରେ ଏକ ଉଦାହରଣ ହେବ।"

କେବଳ ଏତିକି ନୁହେଁ, ଦେଶ ତଥା ଦେଶ ବାହାରୁ ବହୁ ନେତା ଓ ଅନୁଷ୍ଠାନ ତାଙ୍କର ସଫଳତାରେ ଆନନ୍ଦ ବ୍ୟକ୍ତକରି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ। ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ରାଷ୍ଟ୍ରପତି ନିର୍ବାଚନରେ ଜିତିବା ଖବର ପାଇବା ପରେ ସାରା ଦେଶରେ ତଥା ଦ୍ରୌପଦୀ ମୁର୍ମୁଙ୍କ ସହିତ ଜଡ଼ିତ ଥିବା ସଂସ୍ଥା, ଶିକ୍ଷାନୁଷ୍ଠାନ, ଅଞ୍ଚଳରେ ଏକ ପ୍ରକାର ମହୋତ୍ସବ ଲାଗିଗଲା। ତାଙ୍କର କୀର୍ତ୍ତିକଳାପକୁ ନେଇ ବିଭିନ୍ନ ସଙ୍ଗୀତ ପ୍ରତିଷ୍ଠାନ ଗୀତ ଓ ଭିଡ଼ିଓମାନ ପ୍ରସ୍ତୁତ କରିବା ଆରମ୍ଭ କରିଦେଲେ। ତାଙ୍କ ଜୀବନ ବୃତ୍ତକୁ ନେଇ ଚଳଚ୍ଚିତ୍ର ନିର୍ମାଣ ଆରମ୍ଭ ହୋଇଗଲା। ବାଲୁକା କଳାକାରମାନେ ସମୁଦ୍ର ବାଲିରେ ତାଙ୍କର ପ୍ରତିକୃତି ତିଆରି କରି ଅଭିନନ୍ଦନ ଜଣାଇଲେ। କେବଳ ସେତିକି ନୁହେଁ, ଦେଶର ବିଭିନ୍ନ ଅଞ୍ଚଳରେ ତାଙ୍କୁ ଅଭିନନ୍ଦନ ଜଣାଇବା ଉଦ୍ଦେଶ୍ୟରେ କଳାକାରମାନେ ଅଭିନବ ଉପାୟରେ ମନୋରଞ୍ଜନ କାର୍ଯ୍ୟକ୍ରମ ଆରମ୍ଭ କରିଦେଲେ।



ଅତୀତରେ କୌଣସି ରାଷ୍ଟ୍ରପତିଙ୍କ ବିଜୟ ଦିବସରେ ଏଭଳି ବିଜୟ ଉତ୍ସବ ଏକସଙ୍ଗେ ସାରା ଦେଶରେ ପାଳିତ ହୋଇ ନ ଥିଲା। ଏହା ଥିଲା- ଅଭୂତପୂର୍ବ ଘଟଣା। ବିଶେଷ ଭାବରେ ଓଡ଼ିଶାର ରାଜନୈତିକ ଦଳର ନେତା ଓ



କର୍ମୀମାନଙ୍କ ସହିତ ଜନସାଧାରଣ ସମଗ୍ର ରାଜ୍ୟକୁ ଉତ୍ସବ ମୁଖର କରିଦେଇଥିଲେ । ଶପଥ ଗ୍ରହଣ ଉତ୍ସବ ପର୍ଯ୍ୟନ୍ତ ମୟୂରଭଞ୍ଜ ଜିଲାର ବିଭିନ୍ନ ସ୍ଥାନରେ ଏହି ଉତ୍ସବ ଲାଗି ରହିଥିଲା । ଜାତୀୟ ସ୍ତରର ଗଣମାଧ୍ୟମର ପ୍ରତିନିଧିମାନେ ଆସି ସେହି ଉତ୍ସବକୁ ସିଧା ସଳଖ ପ୍ରସାରଣ କରି ଏହାକୁ ଆହୁରି ଉପଭୋଗ୍ୟ କରିଦେଇଥିଲେ ।

ଜୁଲାଇ ମାସ ୨୩ ତାରିଖ ଦିନ କ୍ଷମତାସୀନ ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦଙ୍କୁ ବିଦାୟ ଦେବା ଉଦ୍ଦେଶ୍ୟରେ ସରକାରଙ୍କ ତରଫରୁ ଏକ ସଭାର ଆୟୋଜନ କରାଯାଇଥିଲା । ସେହି ଆୟୋଜିତ ସଭାରେ ମହାମହିମ ଶ୍ରୀରାମନାଥ କୋବିନ୍ଦ ତାଙ୍କର ବିଦାୟକାଳୀନ ଭାଷଣ ଦେଇଥିଲେ । ଶ୍ରୀମତୀ ମୁର୍ମୁଙ୍କୁ ଅଭିନନ୍ଦନ ଓ ସ୍ୱାଗତ ଜଣାଇଥିଲେ ।

**ରାଷ୍ଟ୍ରପତିଙ୍କ ଶପଥ ଗ୍ରହଣ ଉତ୍ସବ:**

୨୦୨୨ ମସିହା ଜୁଲାଇ ମାସର ୨୫ ତାରିଖ ଓଡ଼ିଶା ରାଜ୍ୟ ତଥା ଆଦିବାସୀ ସଂପ୍ରଦାୟ ପାଇଁ ଥିଲା ଏକ ଐତିହାସିକ ଦିବସ । ଭାରତର ପଞ୍ଚଦଶତମ ରାଷ୍ଟ୍ରପତିଙ୍କର ଶପଥ ଗ୍ରହଣ ଉତ୍ସବକୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଦିଲ୍ଲୀଠାରେ ଏକ ଆଡ଼ମ୍ବରପୂର୍ଣ୍ଣ ଉତ୍ସବର ଆୟୋଜନ କରାଗଲା । ଏହି ଉତ୍ସବରେ ବିଦାୟୀ ରାଷ୍ଟ୍ରପତି ଶ୍ରୀ ରାମନାଥ କୋବିନ୍ଦ, ପ୍ରଧାନମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦୀ, ତିନି



ସେନାବାହିନୀର ମୁଖ୍ୟଙ୍କ ସମେତ କେନ୍ଦ୍ର ମନ୍ତ୍ରିମଣ୍ଡଳର ସମସ୍ତ ସଦସ୍ୟ, ବିରୋଧୀ ଦଳର ନେତୃବୃନ୍ଦ ଏବଂ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ତଥା ଶ୍ରୀମତୀ ମୁର୍ମୁଙ୍କର ପରିବାର ଓ ଆତ୍ମୀୟ ସ୍ୱଜନମାନଙ୍କ ମଧ୍ୟରୁ ପ୍ରାୟ ଚାଳିଶ ଜଣ ସଦସ୍ୟ ଏହି ସଭାରେ ଅଂଶ ଗ୍ରହଣ କରିଥିଲେ। ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସ୍ୱତନ୍ତ୍ରଭାବେ ନିମନ୍ତ୍ରିତ ହୋଇ ସେଠାରେ ଉପସ୍ଥିତ ଥିଲେ।

ସଂସଦର କେନ୍ଦ୍ରୀୟ ହଲରେ ଆୟୋଜିତ ଶପଥ ଗ୍ରହଣ ଉତ୍ସବରେ ଭାରତର ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ଶ୍ରୀ ଏ ଭି ରମଣା ନିୟମ ଅନୁସାରେ ତାଙ୍କୁ ପଦ ଓ ଗୋପନୀୟତାର ଶପଥ ପାଠ କରାଇଥିଲେ। ଏହି ଉତ୍ସବରେ ଉପରାଷ୍ଟ୍ରପତି ଶ୍ରୀ ଏମ ଭେଙ୍କୟା ନାଇଡୁ ସଭାପତିତ୍ୱ କରିଥିଲେ। ଶପଥ ଗ୍ରହଣ ଉତ୍ସବରେ ସେ ପାରମ୍ପରିକ ହାତବୁଣା ସାନ୍ତାଳି ଶାଢ଼ି ପିନ୍ଧି ନିଜ ସଂପ୍ରଦାୟର ସମ୍ମାନ ବୃଦ୍ଧି କରିଥିଲେ। ଶପଥ ପାଠ ପରେ ମହାମହିମ ରାଷ୍ଟ୍ରପତି ତାଙ୍କର ପ୍ରଥମ ଅଭିଭାଷଣ ପ୍ରଦାନ କରି ଓଡ଼ିଶାର ପ୍ରାଣ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରିଥିଲେ ଓ ଓଡ଼ିଆ କବି ଭୀମଭୋଇଙ୍କ କାଳଜୟୀ ଉକ୍ତି-

*'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ',*

ଏହି ଉକ୍ତିକୁ ଉଦ୍ଧାର କରି ନିଜର ଅଭିଭାଷଣକୁ ସେ ରସସିକ୍ତ କରିଥିଲେ। ଶେଷରେ ସେ ସମସ୍ତଙ୍କୁ ଅଭିବାଦନ ଜଣାଇ ତାଙ୍କ ପାଇଁ ପ୍ରସ୍ତୁତ ହୋଇ ରହିଥିବା ରାଇସିନା ନାମରେ ଖ୍ୟାତ ରାଷ୍ଟ୍ରପତି ଭବନକୁ ଯାତ୍ରା କରିଥିଲେ। ସେଠାରେ ପୂର୍ବରୁ ପ୍ରସ୍ତୁତହୋଇ ରହିଥିବା ତାଙ୍କର ଦେହରକ୍ଷୀ ବାହିନୀ ତାଙ୍କୁ ସ୍ୱାଗତ କରିଥିଲେ। ଏହି ସବୁ କାର୍ଯ୍ୟକ୍ରମର ସିଧା ପ୍ରସାରଣକୁ ସମଗ୍ର ଦେଶ ତଥା ସମଗ୍ର ବିଶ୍ୱ ଦେଖି ଉଲ୍ଲସିତ ହୋଇଥିଲେ। ଶ୍ରୀମତୀ ଦ୍ରୌପଦୀ ମୁର୍ମୁ ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ସୁବର୍ଣ୍ଣ ଜୟନ୍ତୀ ଅବସରରେ ରାଜନୀତିରେ ପ୍ରବେଶ କରିଥିଲେ। ସଂଯୋଗବଶତଃ ସ୍ୱାଧୀନତା ପ୍ରାପ୍ତିର ୭୫ ବର୍ଷ ପୂର୍ତ୍ତି ଅବସରରେ ପାଳିତ ହେଉଥିବା ଅମୃତ ମହୋତ୍ସବ ବେଳକୁ ସେ ରାଜନୀତିର ଶେଷ ଓ ସର୍ବୋଚ୍ଚ ପାହାଚରେ ପହଞ୍ଚିଯାଇ ନିଜେ ଗୋଟାଏ ନୂଆ ଇତିହାସ ସୃଷ୍ଟି କଲେ।

### ରାଇସିନାରେ ଦ୍ରୌପଦୀ :

ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀର ଆଦିବାସୀ ପରିବାରରେ ଜନ୍ମଲାଭ କରିଥିବା ଦ୍ରୌପଦୀ ମୁର୍ମୁ ଭାରତ ଭଳି ବିରାଟ ଦେଶର ରାଷ୍ଟ୍ରପତି ହେବା ନିଶ୍ଚୟ ଏକ ଐତିହାସିକ ଘଟଣା । ସେ ହେଲେ ଦେଶର ଦ୍ୱିତୀୟ ମହିଳା ରାଷ୍ଟ୍ରପତି ଓ ପ୍ରଥମ ଆଦିବାସୀ ମହିଳା ରାଷ୍ଟ୍ରପତି । ତାଙ୍କର ଲୋକପ୍ରିୟତା ଯଥେଷ୍ଟ ଥିବାରୁ ସବୁବର୍ଗର ସବୁ ଦଳର ନେତା ତଥା ବିଭିନ୍ନ ଦେଶର ରାଷ୍ଟ୍ରମୁଖ୍ୟମାନେ ତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ସେ ରାଷ୍ଟ୍ରପତି ଭବନରେ ପ୍ରବେଶ କରି ତାଙ୍କ ଦାୟିତ୍ୱ ବହନ କଲେ ।

ଏହି ରାଷ୍ଟ୍ରପତି ଭବନ ବିଶ୍ୱର ଯେକୌଣସି ଦେଶର ରାଷ୍ଟ୍ରମୁଖ୍ୟଙ୍କ ବାସଭବନ ତୁଳନାରେ ସର୍ବବୃହତ୍ ଓ ଆକର୍ଷଣୀୟ । ଇଂରେଜ ଶାସନ କାଳରେ ଏହି ଭବନ ଭାରତର ଭାଇସରାୟଙ୍କ ପାଇଁ ନିର୍ମାଣ କରାଯାଇଥିଲା । ତେଣୁ ଏହାକୁ ସେତେବେଳେ 'ଭାଇସରାୟ ହାଉସ' ବୋଲି କୁହାଯାଉଥିଲା । ସେଥିରେ ଭାରତର ତତକାଳୀନ ଗଭର୍ଣ୍ଣର ଜେନେରାଲ ରହୁଥିଲେ । ନୂଆଦିଲ୍ଲୀର କେନ୍ଦ୍ର ସ୍ଥଳରେ ଏହି ପ୍ରକଳ୍ପର କାର୍ଯ୍ୟ ୧୯୧୨ ମସିହାରୁ ଆରମ୍ଭ ହୋଇ ୧୯୨୯ ମସିହାରେ



ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏହାର ନିର୍ମାଣ ଦାୟିତ୍ୱ ଗ୍ରହଣ କରିଥିଲେ ବ୍ରିଟିଶ ସ୍ଥପତି ଲୁଟିୟନସ ଓ ହାର୍ବଟ ବେକର । ଲୁଟିୟନସଙ୍କ ଚିନ୍ତାଧାରା ଥିଲା ପରମ୍ପରାଗତ । ପ୍ରାଥମିକ ସ୍ତରରେ ଯେଭଳି ନିର୍ମାଣର ପରିକଳ୍ପନା କରାଯାଇଥିଲା, ତାହା ପରବର୍ତ୍ତୀ ସମୟରେ ବଦଳି ଯାଇଥିଲା । ଏହି ନିର୍ମାଣ କାର୍ଯ୍ୟରେ ୨୯ ହଜାର ଶ୍ରମିକ ନିୟୋଜିତ ହୋଇଥିଲେ । ଏଥିର ଯଥା ସମ୍ଭବ କମ୍ ଲୁହା ବ୍ୟବହାର କରାଯାଇଛି ।

ରାଇସିନା ପାହାଡ଼ ଉପରେ ନିର୍ମିତ ଏହି ବିରାଟ ପ୍ରାସାଦରେ ଭାରତୀୟ ସ୍ଥାପତ୍ୟ କଳାକୁ ଗୁରୁତ୍ୱ ଦିଆଯାଇଥିଲେ ବି ଏଥିରେ ପାଶ୍ଚାତ୍ୟ କଳାର ସ୍ପର୍ଶ ରହିଛି । ଏହା ଐତିହାସିକ ସାଞ୍ଚିସ୍ତୂପ ଢାଞ୍ଚାରେ ନିର୍ମାଣ କରାଯାଇଛି । ୫୫ ଫୁଟ ଉଚ୍ଚତାରେ ଥିବା ଏହାର ଗମ୍ବୁଜକୁ ସାମନାର ବିସ୍ତୀର୍ଣ୍ଣ ଅଞ୍ଚଳରୁ ଦେଖିଲେ, ଲାଗେ ଏହା ସେହି ଭବନର ଏକ ସୁନ୍ଦର ମୁକୁଟ । ଏହି ଭବନରେ ବିଭିନ୍ନ ଭାରତୀୟ ଡିଜାଇନର ଢାଳ ଯୋଡ଼ା ଯାଇଛି, ଯାହା ଅତ୍ୟନ୍ତ ପ୍ରଭାବଶାଳୀ ହୋଇପାରିଛି । ରାଷ୍ଟ୍ରପତି ଭବନ ସାମ୍ନାରେ ଜୟପୁର ସ୍ତମ୍ଭ ଠିଆ ହୋଇଛି । ଜୟପୁର ମହାରାଜାଙ୍କୁ ସମ୍ମାନ ଜଣାଇ ଏହି ସ୍ତମ୍ଭ ନିର୍ମାଣ କରାଯାଇଥିଲା । ଏହି ସ୍ତମ୍ଭ ଉପରେ ଏକ କାଚର ତାରା ରହିଛି, ଯାହାକି 'ଷ୍ଟାର ଅଫ ଇଣ୍ଡିଆ' ନାମରେ ପରିଚିତ ।

ରାଷ୍ଟ୍ରପତି ଭବନର ମୁଖ୍ୟ କୋଠାରେ ୩୪୦ଟି କୋଠରି ରହିଛି । ସେଥିରେ ରାଷ୍ଟ୍ରପତିଙ୍କ ଅଫିସ, ଅଭ୍ୟର୍ଥନା କକ୍ଷ, ଅତିଥି କକ୍ଷ ଓ ବାସଭବନ ଇତ୍ୟାଦି ରହିଛି । ପ୍ରାସାଦର ମୁଖ୍ୟଭାଗର କେନ୍ଦ୍ରରେ ମୁଖ୍ୟ ଗମ୍ବୁଜର ଠିକ ତଳେ ଦରବାର ହଲ ରହିଛି, ଯାହାକୁ ଇଂରେଜ ଅମଳରେ ରାଜଗାଦି କକ୍ଷ କୁହାଯାଉଥିଲା । ସେଠାରେ ଗଭର୍ଣ୍ଣର ଜେନେରାଲ ଓ ତାଙ୍କ ପତ୍ନୀଙ୍କର ରାଜଗାଦି ଥିଲା ।

ଏହି ବିଶାଳ କକ୍ଷର ଚାରିକୋଣରେ ରହିଛି-ଗୋଟିଏ ପୁସ୍ତକାଳୟ, ବୃହତ ଭୋଜନ କକ୍ଷ, ଜଳର ଫୁଆରା, ଓ ବେସିନ । ଆଠଟି ଶଙ୍ଖ ମଲମଲ ପଥରରେ ନିର୍ମିତ ସିଂହ ବେସିନରେ ପାଣି ଢାଳୁଥିବା ଅବସ୍ଥାରେ ରହିଛନ୍ତି । ଏହା ପ୍ରାସାଦର କେନ୍ଦ୍ରର ଶୀର୍ଷରେ ଉଚ୍ଚା ତାମ୍ର ଗମ୍ବୁଜ ରହିଛି, ଯାହା ସମଗ୍ର ପ୍ରାସାଦକୁ ଆକର୍ଷଣୀୟ କରି ରଖିଛି । ଭବନର ଚାରିକୋଣର ମଧ୍ୟ ଭାଗରେ କର୍ଣ୍ଣରେଖା ଗମ୍ବୁଜ ରହିଛି ।



ରାଷ୍ଟ୍ରପତି ଭବନର ଦରବାର ହଲରେ ଗୌତମ ବୁଦ୍ଧଙ୍କର ଏକ ସୁନ୍ଦର ପ୍ରତିମା ରହିଛି। ସେଠାରେ ଏକ ଉପହାର ସଂଗ୍ରହାଳୟ ମଧ୍ୟ ରହିଛି। ଦେଶ-ବିଦେଶରୁ ରାଷ୍ଟ୍ରପତିଙ୍କୁ ମିଳୁଥିବା ଉପହାର ଏହି ସ୍ଥାନରେ ସଂରକ୍ଷଣ କରି ରଖାଯାଏ। ପଞ୍ଚମ ଜର୍ଜଙ୍କର ୬୪୦ କିଲୋଗ୍ରାମ ଓଜନର ରୁପା ସିଂହାସନ ମଧ୍ୟ ଏଇଠି ସଂରକ୍ଷିତ ହୋଇରହିଛି। ରାଜା ଜର୍ଜ ୧୯୧୧ ମସିହାରେ ଏହି ସିଂହାସନରେ ବସୁଥିଲେ। ରାଷ୍ଟ୍ରପତି ଭବନର ମାର୍ବଲ ହାଉସରେ ରହିଛି-ଭାଇସରାୟ ଓ ବ୍ରିଟିଶ ରାଜପରିବାରର ସଦସ୍ୟଙ୍କର ମାର୍ବଲ ନିର୍ମିତ ପ୍ରତିମୂର୍ତ୍ତି ଓ ଚିତ୍ର।

ରାଷ୍ଟ୍ରପତି ଭବନର ଅଶୋକା ହଲ ବେଶ ପ୍ରସିଦ୍ଧ। ଏହି ହଲରେ ମନ୍ତ୍ରୀମାନଙ୍କର ଶପଥ ଗ୍ରହଣ ଉତ୍ସବ ଅନୁଷ୍ଠିତ ହୋଇଥାଏ। ରାଷ୍ଟ୍ରପତି ଭବନରେ ମୋଟ ୭୫୦ ଜଣ କର୍ମଚାରୀ କାର୍ଯ୍ୟରତ। ଏମାନଙ୍କ ମଧ୍ୟରୁ ୨୩୫ ଜଣ ରାଷ୍ଟ୍ରପତିଙ୍କ ଅଫିସରେ କାର୍ଯ୍ୟ କରନ୍ତି। ଏଠାରେ ପ୍ରତି ଶନିବାର ଦିନ ଦଶଟା ସମୟରେ ତିରିଶ ମିନିଟ ପାଇଁ 'ରେଞ୍ଜ ଅଫ ଗାର୍ଡ' ସମାରୋହ ଅନୁଷ୍ଠିତ ହୋଇଥାଏ। ମୋଗଲ ଗାର୍ଡେନ ନାମରେ ନାମିତ ଗୋଲାପ ଉଦ୍ୟାନ ସମେତ ଏଠାରେ ବିଭିନ୍ନ ଆକାରରେ ଅନେକଗୁଡ଼ିଏ ଉଦ୍ୟାନ ରହିଛି।

ସେଠାରେ ସକଳ ପ୍ରକାର ସୁଖ ସୁବିଧା ରହିଥିବା ଭାଇସରାୟଙ୍କ ଶୟନକକ୍ଷ ଅତ୍ୟଧିକ ଆଡ଼ମ୍ବରପୂର୍ଣ୍ଣ। ଏହି ବ୍ୟବସ୍ଥାକୁ ଦେଖି ପ୍ରଥମ ଭାରତୀୟ ଗଭର୍ଣ୍ଣର ଜେନେରାଲ ସି. ରାଜଗୋପାଳଚାରୀ ସେଥିରେ ନ ଶୋଇ, ସେ ଅତିଥି କକ୍ଷ ବା ପାହୁନା କକ୍ଷରେ ଶୋଇବାକୁ ପସନ୍ଦ କରିଥିଲେ। ତାଙ୍କର ପରବର୍ତ୍ତୀ ରାଷ୍ଟ୍ରପତିମାନେ ମଧ୍ୟ ସେହି ପରମ୍ପରାକୁ ଗ୍ରହଣ କରିନେଇଛନ୍ତି। ଏହି ଭବନକୁ 'ରାଷ୍ଟ୍ରପତି ଭବନ' ଭାବରେ ୧୯୫୦ ମସିହା ଜାନୁଆରୀ ମାସ ୨୬ ତାରିଖରୁ ମାନ୍ୟତା ମିଳିଛି।

**ରାଷ୍ଟ୍ରପତିଙ୍କୁ ମିଳୁଥିବା ସୁବିଧା ସୁଯୋଗ:**

ଭାରତର ରାଷ୍ଟ୍ରପତି ହେଉଛନ୍ତି ରାଷ୍ଟ୍ରର ପରିଚୟ। ସେ ହେଉଛନ୍ତି ଦେଶର ପ୍ରଥମ ନାଗରିକ। ତେଣୁ ତାଙ୍କୁ ଉପଯୁକ୍ତ ସମ୍ମାନ ଦେବା ଉଦ୍ଦେଶ୍ୟରେ ରାଷ୍ଟ୍ରପତିଙ୍କ



ପାଇଁ ବିଭିନ୍ନ ପ୍ରକାର ସୁବିଧା ସୁଯୋଗ ଦିଆଯାଏ । ତାଙ୍କୁ ଏବେ ମାସିକ ପାଞ୍ଚଲକ୍ଷ ଟଙ୍କା ବେତନ ଆକାରରେ ପ୍ରଦାନ କରାଯାଏ । ସେ ହେଉଛନ୍ତି-ଦେଶର ସର୍ବାଧିକ ବେତନଧାରୀ ବ୍ୟକ୍ତି । ପ୍ରାଥମିକ ଅବସ୍ଥାରେ ରାଷ୍ଟ୍ରପତିଙ୍କର ବେତନ ଦଶହଜାର ଟଙ୍କା ଥିଲା । ପରବର୍ତ୍ତୀ ସମୟରେ ୧୯୯୮ ମସିହାରେ ଏହି ବେତନ ବୃଦ୍ଧି ପାଇ ପଚାଶ ହଜାର ଟଙ୍କା ହୋଇଥିଲା । ୨୦୧୮ ମସିହାଠାରୁ ତାଙ୍କୁ ମାସିକ ପାଞ୍ଚଲକ୍ଷ ଟଙ୍କା ଲେଖାଁ ବେତନ ମିଳୁଛି । ବିଳାସପୂର୍ଣ୍ଣ ରାଷ୍ଟ୍ରପତି ଭବନ ବ୍ୟତୀତ ତାଙ୍କ ପାଇଁ ଆହୁରି ଦୁଇଟି ଜାଗାରେ ମଧ୍ୟ ରାଷ୍ଟ୍ରପତି ବାସଭବନ ରହିଛି । ସେଥିମଧ୍ୟରୁ ଗୋଟିଏ ତେଲେଙ୍ଗାନାର ସିକନ୍ଦରାବାଦ ସହରରେ ଏବଂ ଅନ୍ୟଟି ହିମାଚଳ ପ୍ରଦେଶର ଶିମଳାରେ ରହିଛି ।



ଶିମଳାର ମାସୋବରା ପାହାଡ଼ ଉପରେ ଥିବା ଏହି ଭବନର ନାମ ରହିଛି- 'ପ୍ରେସିଡେନସିଆଲ ରିଟ୍ରିଟ' । ଏହାକୁ ରାଷ୍ଟ୍ରପତିଙ୍କର ଦ୍ୱିତୀୟ ଠିକଣା କୁହାଯାଏ । ଏଠାକୁ ରାଷ୍ଟ୍ରପତି ବର୍ଷକୁ ଅତି କମ୍‌ରେ ଥରେ ଯାଇଥା'ନ୍ତି । ଏହାକୁ ଲର୍ଡ଼ ଡେଲାହାଉସୀ ୧୮୫୦ ମସିହାରେ ନିର୍ମାଣ କରିଥିଲେ । ଏହାକୁ ସଂପୂର୍ଣ୍ଣ କାଠରେ ତିଆରି କରାଯାଇଛି । ଏଥିରେ ଷୋହଳଟି ଭବ୍ୟ କୋଠରି ରହିଛି । ସାଧାରଣତଃ ଖରାଦିନରେ ରାଷ୍ଟ୍ରପତି ସେଠାକୁ ଯାଇ ଗୋଟିଏ ସପ୍ତାହ ରହିଥା'ନ୍ତି ।

ସେହିପରି ସିକନ୍ଦରାବାଦ ସହରରେ ତୃତୀୟ ରାଷ୍ଟ୍ରପତି ଭବନ ରହିଛି। ଏହାକୁ ହାଇଦ୍ରାବାଦର ନିଜାମ ନଜିର ଅଦୌଲ୍ଲା ୧୮୬୦ ମସିହାରେ ନିର୍ମାଣ କରାଇଥିଲେ। ୧୦୧ ଏକର ବିଶିଷ୍ଟ ଜମିରେ ନିର୍ମିତ ଏହି ପ୍ରାସାଦରେ ମଧ୍ୟ ଷୋହଳଟି ଆକର୍ଷଣୀୟ କୋଠରି ରହିଛି। ଦେଶ ସ୍ୱାଧୀନତା ଲାଭ କରିବା ପରେ ହାଇଦ୍ରାବାଦ ନିଜାମ ଏହି ପ୍ରାସାଦକୁ ଭାରତ ସରକାରଙ୍କୁ ହସ୍ତାନ୍ତର କରିଦେଇଥିଲେ।

ରାଷ୍ଟ୍ରପତିଙ୍କ ବିଶେଷ ସୁରକ୍ଷା ନିମନ୍ତେ ଆହୁରି ଅନେକ ପ୍ରକାର ସୁବ୍ୟବସ୍ଥା କରାଯାଇଛି। ସେଥିମଧ୍ୟରୁ ତାଙ୍କ ପାଇଁ ବ୍ୟବହାର ହେଉଥିବା ଗାଡ଼ିର ନିର୍ମାତା, ମଡ଼େଲ ଓ ପଞ୍ଜୀକରଣ ନମ୍ବର ଗୋପନ ରଖାଯାଏ। ତାଙ୍କ କାରରେ ଲାଇସେନସ ପ୍ଲେଟ ନ ଥାଏ। ତା' ବଦଳରେ ସେଇଠି ଦେଶର ଜାତୀୟ ପ୍ରତୀକ ଅଶୋକ ସ୍ତମ୍ଭ ଲାଗିଥାଏ। ରାଷ୍ଟ୍ରପତିଙ୍କ ପାଇଁ ନଅସ୍ତରୀୟ ସୁରକ୍ଷା ବ୍ୟବସ୍ଥା ରହିଥାଏ। ଅବସର ଗ୍ରହଣ ପରେ ତାଙ୍କୁ ମାସିକ ଦେଢ଼ଲକ୍ଷ ଟଙ୍କା ଲେଖାଁ ପେନସନ ସହିତ ତାଙ୍କର ସହାୟକଙ୍କ ପାଇଁ ତିରିଶ ହଜାର ଟଙ୍କା ଭତ୍ତା ମିଳିଥାଏ। ବିନା ଭଡ଼ାରେ ତାଙ୍କୁ ଦିଲ୍ଲୀରେ ଗୋଟିଏ ଆଠ କୋଠରି ବିଶିଷ୍ଟ ସରକାରୀ ବଙ୍ଗଳା ଦିଆଯାଏ। ରେଳଯାତ୍ରା ବା ବିମାନଯାତ୍ରା ସେ ମାଗଣାରେ କରିପାରନ୍ତି।

